# ଅଂତତଃ ନିଶ୍ଚୁପ

( କବିତା )

କମଳାକାଂତ ଲେଂକା

ପ୍ରକାଶକ

ବିଦ୍ୟା ମଂଦିର

ଭଦ୍ରକ

ପ୍ରକାଶ କାଳ

୧୯୭୫

ଲିପିକାର

ଶ୍ରୀ ପ୍ରେସ୍, ଭଦ୍ରକ

ପ୍ରଚ୍ଛଦ

ଅସିତ୍ ମୁଖାର୍ଜୀ

ଶୋଭନ ସଂସ୍କରଣ

ମୂଲ୍ୟ ଟ ୬.୦୦ (ଛ’ଟଂକା ମାତ୍ର)

# ATLEAST QUIET

*an anthology of modern oriya poetry*

by

KAMALAKANTA LENKA

*Publisher*

Vidya Mandir

Bhadrak

Time of Publication

1 9 7 5

*Printed at :*

SREE PRESS

*Design*

Asit Mukherjee

Price : Deluxe Edition

Rs. 6.00

ମୋ କବିତାର
ନିଂଦୁକ/ପ୍ରଶଂସକ ,
ଆଲୋଚକ/ସମୀକ୍ଷକମାନଂକୁ

## କବିର ଫସଲ



ସୁନା ଫସଲ ( ୧୯୫୮ ) କବିତା

ପ୍ରୀତି ଓ ପ୍ରଶସ୍ତି ( ୧୯୬୩ ) ”

ଉତ୍ତରଣ ( ୧୯୬୭ ) ଦୀର୍ଘ କବିତା

ସ୍ମରଣ ବିସ୍ମରଣ ( ୧୯୭୩ ) କବିତା

କବିତାର ମୂର୍ତ୍ତି ( ୧୯୭୪ ) ”

ଅଥଚ ସ୍ୱର ( ପରବର୍ତ୍ତୀ ପ୍ରକାଶନ ) କବିତା

# ସୂଚୀ

# ରୂପାଂତର

ଭାଂଗିପଡ଼େ ବୃକ୍ଷ ଶାଖା, ଆକାଶ ଓ
ସବୁଜ ଅରଣ୍ୟ । ଇତସ୍ତତଃ ସୋରଷ ଫୁଲର
ଅଦୃଶ୍ୟ ସାମ୍ରାଜ୍ୟ । କଂଦାକଟା
ଦୃଶ୍ୟ କେଉଁ ଗ୍ରାମ୍ୟ ଶବାଧାର
ପାଖେ ପାଖେ ଟଗର ଓ ମଲ୍ଲୀର
ଆସର ! କଂଦବା କାହାକୁ ତେବେ ?
ଉଡ଼ଂତ ପକ୍ଷୀକୁ ନା ତାର
ଛିନ୍ନଡେଣା, ଥୋପା ଥୋପା ରକ୍ତ
ପ୍ରାର୍ଥନାର ।।

୧

ଗାଈଆଳ ଫେରିଆସ । ଘୂରୁ ନାହିଁ
ଭୁଛାରେ ପ୍ରାଂତରେ । ଡ଼ିଅଁ ନାହିଁ ଅକାରଣେ
ନିଦାରୁଣ ଖରା ଝଡ଼ରେ । ହଜିଲା
ରତ୍ନ କ ଆଉ ମିଳିବରେ ?
ଅଧାପେଟା ଗାଈର ଦୁଃଖରେ ।
ରେ ମଭୁଆଳ, ଫେରିଆସ ନିଶ୍ଚିଂତରେ;
ମୁନିବର ନାଲ ଆଖି, ନଡ଼ ନଡ଼ ପାଂଚଣ ତ
ତୁମ ଅପେକ୍ଷାରେ ।।

୨

ସାମାନ୍ୟ ଦ୍ୱୀପର ମାଟି ଲୁହ ଏବଂ ଲେହନରେ
ଚିକ୍‌ଠା, କଲବଲ । ଯାହାକୁ ଘଷୁର :
ଅଜସ୍ର ବୋଟେଲ ଚୋଉ
ଏ କୂଳରୁ ଭସିଯାଏ କେଉଁଆଡ଼େ ?
ଜାଣେ ନାହିଁ କେହ୍ବା ଜଣେ,
ସମ୍ମୋହିତ ଢେଉଙ୍କର ସ୍ଥିର କୋଳାହଳ ।
ସବୁ ଏକ ଭ୍ରୂଣବାଟୀ, ଲୀଳା ଖେଳା,
ଓଲଟ କମଳ ॥

୩

ନିନ୍ଦା ଓ ପ୍ରଶଂସାମାନେ ସୁସଜ୍ଜିତ
ପାପ ଏବଂ ପୁଣ୍ୟର ନଅର ?
ପାପ ଏକ ଝଲମଲ ପୋଖରୀର
ନୀଳ ଜଳ ? ପୁଣ୍ୟ ସାଦା ପଦ୍ମର ସରାଗ ?
ନିନ୍ଦା ଏକ ଉତ୍ତର ପବନ, ଏବଂ
ପୁଣ୍ୟ ଅଟେ ଧଡ଼ଭଂବ ବଉଡ଼ିଇର ବାଶିଁ !
ଗ୍ଲେଟେଇ ଗ୍ଲେଟେଇ ଆସେ ପ୍ରଶଂସା
ଓ ଦୂରଦେଶୀ ପକ୍ଷୀ ମାନ ମାନ,
ଯେ ଅଜ ଗୁହାଁଲେ : କୁଆ ଗ ଗ କରି
ଭାଂଗିଦିଏ ଏକାତ୍ମୀୟ ଚେତନାର
ସୁଖ ନିଦ୍ରା, ଊର୍ଦ୍ଧ୍ୱମୁଖୀ, ଅଧଃମୁଖୀ,
ଭାବନାର ଗଡ ॥

ତଥାପି ଉଲଂଗ ଉପୃ
ଚଇଯାଏ ! ଲେଭମାପୂ ଶବ୍ଦର ବଂଦୁକୁ
ସ୍ପୁରଣା, କୋତରା ଦୃଶ୍ୟ
ଫ.ଫ୍ଲରେ ଢୋଲଧରେ :
ଦୁଟଶ ଖାଲ ଶୁନ୍ଧ୍ୟାର ବସ୍ତ୍ର ନଗର,
ମନ୍ଦିରର ରକ୍ତର ଟୀକା
ମୁକୁଟ କ ଶୋକାର୍ତ୍ତ ଆତ୍ମାର୍ !

୫

ଅଂଟମାଡ଼, ଯୋଡ ହାତେ
ନଇଁ ଖଡ଼େ ସଂଙ୍କର ଗୃହିଣୀ,
ଚଞ୍ଚଳ ଉଦ୍ଭାସଇ
ଗ୍ଲେଟ ଗ୍ଲେଟ ଫୁଲ ଏବଂ ଦୀପଶିଖା,
ଟଲମଲ ଆଖି ଓ ନିଃଶ୍ୱାସ ।
ଯେ ଆଜି ଗୁହାଁଲେ ମାଟି,
ଏକାକାର ସମୁଦ୍ର ଆକାଶ ॥

(୧୯୭୪ ଜାନୁଆରୀ 'ଝଂକାର'ରେ ପ୍ରକାଶିତ)

# ଉପହାସ

ଭାଗ୍ୟ ନା ପୌରୁଷ କା'ର
ଛଳେ ହେଲେ ଦୋଷ ନାହିଁ ।
ବନ୍ଧୁପାଇଁ ଶୂନ୍ୟ ଜଗ
ଅଖଡ଼ାର ଘର :
ଯା' ଭିତରେ ବ୍ୟକ୍ତ ଓ ଅବ୍ୟକ୍ତ ଧ୍ୱନି
ଫେଂଟି ହୁଏ । ନିତ୍ୟ ଚରାଚର—
ଖୋଜେ ପଥ, ଲୋଡ଼େ ସ୍ପୃହା,
ସାମାନ୍ୟ ପାଲଟା ତେଜ,
ସମସ୍ତର ପ୍ରୟୋଜନହୀନ ଦଂଭପଣ
ଅଂତର୍ମୁଖୀ ନିଃଶ୍ୱାସର
ଉତ୍ତପ୍ତକୁ ଫିଂଗି ଦେଇ
ବହିଯାଏ ଦକ୍ଷିଣା ପବନ ।।

ଭାଗ୍ୟ ନା ପୌରୁଷ କା'ର
ଛଳେହେଲେ ଦୋଷ ନାହିଁ ।
ସମସ୍ତଇଁ ଛତ୍ରପତି, ଦିବ୍ୟ ସିଂହାସନ
ସନ୍ନିକଟେ ଠେକଏରେ ବଜ୍ରବାହୁ
ମୋ ସ୍ମୃତିର ଛଂଦ,ଯତି,ଉପଧା ଓ
ସେତେ ବିକର୍ଷଣ ।
ଅନାଲୋଚ୍ୟ, ସଂଜ୍ଞାହୀନ ସ୍ମୃତିର
ମୁହୂର୍ତ୍ତ ଭାଂଗେ ଖାଇବାର କାରଗସ୍ତ ?

ଭାଗ୍ୟ ନା ପୌରୁଷ କଏ
ଛଂଦହୀନ? ମୃତ୍ୟୁର ବପୁସଂ
ଜଣାଯାଏ ସଦ୍ୟ ବୈଧବ୍ୟର
କଳଧ୍ୱନ, ଶୋକ କିଂବା ହସର ଉଚ୍ଛ୍ୱାସ ।

(ଝଙ୍କାର'ମାର୍ଚ୍ଚ ୧୯୭୩)

ଅଂଚଚଃ ନଷ୍ଟ୍ରପ୍ର ।। ଟ

# ହସ୍ତାକ୍ଷର

ଆଲୁଅଠୁଁ ମନୋହର, ସୁଂଦର ଓ ଇଂଦ୍ରଧନୁଠାରୁ
ଲୋଭନୀୟ । ପଜ ସକାଳର ସତେଜ ଆଖିର ଦୃଶ୍ୟ ।
ଝିଲମିଲ କାଚ ଅଇନାରେ ସ୍ଫୁରିତ ସକଳ ଲୁହ ।
ଚିକି ଚିକି ବନ୍ୟ ଚଢ଼େଇଙ୍କ
ଗୁଂଜିତ ଅଖିଳ ଭାବ । ଉଚ୍ଛନ୍ନ ଢେଉର ସ୍ୱର
ଦୋହରାଏ : ପ୍ରଭୁ, ତୁମ ଘନନୀଳ ଆକାଶର ଭାଷା,
ମୋ ଅସ୍ଥିର ମନତଳ ଧାରୁ ଆତୁରତା ।

ଜଂଗଲେ ଫୁଟାଏ ଫୁଲ । ନଈ ସବୁ ଗୀତ ହୋଇ
ବହିଯାଏ ଦୂର ବନସ୍ତକୁ । ନରମ ପବନ ଇତସ୍ତତଃ
ଖେଳି ବୁଲେ । ହାତ ପାଆଂତାରେ
ଭାଂଗିପଡେ ଚିର୍ଢ଼ବର୍ଣ୍ଣ ଜନମାଠ ସ୍ମୃତି । ଏବଂ
ଅଂଧକାର ଗୀତ ଗାଏ ନିଃସଂଗ ମୁହୂର୍ତ୍ତ ପରି,
ରାସ୍ତା ସବୁ ସଂପର୍କର ଲଂଘିତ ଉତ୍ତର ।

୩

ଆଖି ଯୋଡେ କଳଂକକୁ । ଲୁହର ଅଠାରେ
ଲାଗି ରହେ ସ୍ମୃତି ? ଭୟଂକର ଶବ୍ଦ, କିଂବା
ଆପଣା ସ୍ୱାକ୍ଷର ? ? ଓ ଅବାକ୍ ଗୃହାଣୀ ଖୋଜେ
ଦୂର ବସଂତକୁ । କଅଁଳିଆ ଗଛର ପତ୍ରକୁ ।
ଢେଉରେ ଢେଉଁ ମିଶେ । ଅଜଣା କାହାକୁ ?

ଅତଏବ : ଆଲୁଅଠୁ ମନୋହର । ଇଂଦ୍ରଧନୁଠାରୁ
ଅଦ୍ଭୁତ ରଂଗିନ । ସ୍ୱପ୍ନଠାରୁ ନିଶ୍ଚିତଇଁ ସତ୍ୟ
କ'ଣ ହୋଇପାରେ ? ହେଇପାରେ
ଅପଣାର ଭଗ୍ନାଂଶ ବା ଅବିଭକ୍ତ ସତ୍ତ୍ୱ ।
ନହେଇଁ କି ଅବିଭାଜ୍ୟ, ଏକକ ? ଓ
ଏକମାତ୍ର ବିଂଦୁର ନସ୍ଥୂଂତା ।

(୨୩ ବର୍ଷ ଷଷ୍ଠ ସଂଖ୍ୟା 'ଝଂକାର' ରେ ପ୍ରକାଶିତ)

# ଅଧିକାର

ମୁଁ ଏକମାତ୍ର ପୁତ୍ର ବାପାଙ୍କର । ଓ
ଚଞ୍ଚଳରେ ଛିନ୍ନଛତ୍ର
ମୋ ସାମ୍ରାଜ୍ୟ, ଉତ୍ତରାଧିକାର ॥
ମୋ ରକ୍ତର ରଂଗ ଫୁଲ
ଲୁଢ଼ କୁତ ଜମା ହୁଏ
ବାପାଙ୍କର ଅବାଂଛିତ ସ୍ନେହ
ଏବଂ ଝଙ୍କାପିତ ପିତୃତ୍ୱର କୋଳେ,
ବାରଂବାର ନଚେଇଲା, ନର୍ଗିବ ହାତ
ପୋଛିଦିଏ ମୋ ଧୈର୍ଯ୍ୟର ଲୁହ, ଏବଂ
ନିଷ୍ଠୁରତା, ନିର୍ମମ ସକାଳେ ॥

ଏକମାତ୍ର ପୁତ୍ର ହେବା କି ଗୌରବ !
କି ମଧୁର ଯନ୍ତ୍ରଣା ଓ ସ୍ଫୁର୍ତ୍ତିର କୁହୁକ
ଓ କି ଆଶ୍ଚର୍ଯ୍ୟ ସାମ୍ରାଜ୍ୟର
ବାଂଛିତ ଆସନ !
ବାପା, ତୁମ ଛଡ଼ା ଜାଣେ କିଏ ?
ଜନ୍ମ ଏବଂ ମରଣର
ଗୋପନ ମୈଥୁନ ॥

ମୁଁ
ଏକମାତ୍ର ପୁତ୍ର ଏବଂ ସ୍ଥାଣୁ ସମସ୍ତଙ୍କ
ନିର୍ଲଜ ଅବୋଲକରା ।

ସଂଖ୍ୟାହୀନ ମୃତ୍ୟୁ ମୁଖୀ ଝଡ଼,
ଏବଂ ବର୍ଷାହୀନ ବର୍ଷାର ଡାକରା ।
ଏକମାତ୍ର ଶବ୍ଦ କେବଳ
ନିଃସଂଗ ଓ ଅର୍ଥମସ୍ତ
ଧ୍ୱନିର ଖସଡ଼ା ! ବାପା,
ତୁମେ ଜାଣ ଯୌବନର ହୁଂକାର
ଓ ପୁଂସକର ଅହଂକାର
ବଟବୃକ୍ଷ ପରି ସ୍ଥିର ଗୁଡ଼ିର ଅପେକ୍ଷା ।
ଏକମାତ୍ର ପୁତ୍ର ହେବା କ ଗୌରବ !
ସୁନାନାଖୀ ବୋଉ ଏବଂ ଶ୍ରେଷ୍ଠ ଶ୍ରେଷ୍ଠ ସ୍ନେହର ଓଠକୁ
ଚୁମାଦେବା ଅହଂକାର । କ କଦ୍ରୂପ ?
ପ୍ରତିଶୋଧ, ହିଂସ୍ର ଅଧିକାର ।
ଏକମାତ୍ର ପୁତ୍ର ପାରେ
କ୍ଷୀରସ୍ନାଣ ଖୋଲି ସୁଣି ସିଂଧି ଖୋଲିବାର ।

୧୯୭୨ ସେପ୍ଟେମ୍ବର ସଙ୍ଖ୍ୟା 'ଝଂକାର' ରେ ପ୍ରକାଶିତ

# ଈଶ୍ୱରଂକ ଫାଶି ପାଇବା ଦିନ

୧

ହେ ମୁହୂର୍ତ୍ତର ଈଶ୍ୱର, ହେ ପ୍ରତ୍ୟେକ
ଲତା ଓ ବଲ୍ଲରୀର ସର୍ବାଧିକାର, ଆଜି
ତୁମର ଫାଶି ପାଇବାର ଦିନ :
ପ୍ରତ୍ୟେକଂକ ଘଂଟାରେ ଦୁଃସ୍ୱପ୍ନ, ଏବଂ
କୌତୁହଳର ରାଜପଥ, ଘୋଡ଼ା ନାଚର
ଧୂଳି ଝଡ଼ ; ଏବଂ ଲୋକାରଣ୍ୟ
ପ୍ରବଂଚିତ ପୃଥ୍ୱୀ !

ହେ ନିରପରାଧ, ସ୍ଥିର ମୁହୂର୍ତ୍ତ ।
ତୁମକୁ ଫାଶି ଦେବାର ଅଧିକାର
କି'ଣ ଅଛି ଅନିଶ୍ଚିତ ପ୍ରତ୍ୟାଶାର ?
ନା ଅସ୍ୱୀକୃତ ସାମାଜିକ ବ୍ୟବସ୍ଥାର ?
ନା ନିପୀଡ଼ିତ ସ୍ନେହକାଂଗାଳ ଆତ୍ମାର ?
ତୁମ ଶ୍ରଦ୍ଧାର ଗୁପ୍ତଚର
ମୁଁ : ଫାଶି ଖୁଂଟରେ ଝୁଲାଇବି
ତୁମ ଅନାତ୍ମୀୟ ଦୁଃଖର ୨°୭ ଖଂଡ
ହାଡ଼ର କଂକାଳ ॥

୨

ତୁମ ପୁଲକିତ ଦୃଷ୍ଟିର ଝଲକରେ
ବା ତୁମ ଶାଣିତ, ନିରଲଂବ ହସର ଖଂଡାଟିର
ନିଷ୍ଠୁର ଦାପ୍ତିତ୍ୱର ନିର୍ଭୟତା
ଖସିଯିବ ନାହିଁ ମୋ ହାତରୁ,
ଓ ପ୍ରତିଟି ଅଙ୍ଗୁଳିର କଂଠାରେ
ଲେପି ହୋଇଥିବା ରକ୍ତକୁ
ତୁମ ସର୍ବାଂଗରେ ବୋଳି ଦେବି :
ମୃତ୍ୟୁ ପୂର୍ବର ଯା ଶେଷ ଇଚ୍ଛା
ବା ଅଂତିମ ସାଂତ୍ୱନା ॥
ହେ ରଜାଧିରଜ, ହେ ଅମୁହାଁ ଦେଉଳର ଦିଅଁ,
ହେ ଅସ୍ପୃଷ୍ଟ, ନିଃସଂଗ ମହ୍ୱମ୍ନତା,
ତୁମର ଆଜି ଫାଶି ପାଇବାର ଦିନ :
ଓ ମୁଁ ଉଜ୍ଜ୍ୱଳ ପୁରୁଷର ଭଂଗୀରେ
କି ଉଦ୍ଧତ ! କି ଶାଂତ ॥

୩

ଏଇ ଦେଖ, ସୂର୍ଯ୍ୟ ନିଦ୍ରିତ । ପୃଥ୍ୱୀ ଚକିତ !
ଓ ଗ୍ରହ ନକ୍ଷତ୍ର କକ୍ଷଚ୍ୟୁତ ; ଏବଂ
ରେରେକାରର ଧ୍ୱନିରେ
ତୁମେ ଝୁଲୁଚ ଶୂନ୍ୟରେ । ହେ ଅଂଧସ୍ତ,
ହେ ଯାଯାବର, ହେ ସଂଜ୍ଞାହୀନ ଉତ୍କୀର୍ଣ୍ଣ ସଜ,
ତୁମର ପ୍ରତ୍ୟେକ ଲତା ବଳିତାରେ
ନିମଜ୍ଜିତ ମହାକାଳ । ତୁମର ପ୍ରତ୍ୟେକ
ସ୍ୱପ୍ନ ଅହଂକାରର ତେଜରେ
ଅସଂଭବ ଖୁସିର କରତାଳି !

ହେ ଆନ୍ତ୍ରିକ, ହେ ଦୋଳିତ ବ୍ୟାକୁଳତାର
ଶ୍ରାବଣ, ଭ୍ରମର ଫାଶି ପାଇବାର ଢଙ୍ଗରେ
ବସ୍ତୁର ଓ ନିର୍ବସ୍ତୁର ଏକାକାର, ଏବଂ
ସମୁଦ୍ର, ଆକାଶର ବଂଧନରେ
ମୁଁ ଏକ ଅପସୃୟମାନ ଶୂନ୍ୟତା !!

(ଏପ୍ରିଲ ସଂଖ୍ୟା 'ନବରଙ୍ଗ' ୧୯୭୪ରେ ପ୍ରକାଶିତ)

## ଅସ୍ପଷ୍ଟ ମୁହୂର୍ତ୍ତର ସ୍କେଚ୍

ଘନିଷ୍ଠ ମୁହୂର୍ତ୍ତ, ଦେଖ
କେମିତି କାକୁସ୍ଥ ଏବଂ ହେଠମୁଖ,
ଗଳଦ୍‌ଘର୍ମ, ବାକ୍ୟହୀନ, ସ୍ଥିର ଦାର୍ଶନିକ
ଅର୍ଥହୀନ ସମସ୍ୟର ଗୋଇଠିରେ
ଦଳି ହୋଇ କାନ୍ଦୁଥାଏ
ପ୍ରତ୍ୟାଶିତ ଘଟଣାର ଶୋକ ।

ବିବର୍ଜିତ ଇଚ୍ଛା ସବୁ ସ୍ଥୈର୍ଯ୍ୟହୀନ,
ଜବୁ ଥୁବୁ ହୁଳ ଡଂଗାପର
ଝୁଞ୍ଚୁଲା ନଇର କୂଳେ ବିକ୍ଷିପ୍ତ ଓ
କ୍ଲାଂତ, ଶୋକାଚ୍ଛନ୍ନ ।
ଦୂରାଂତର ସର୍ପ ବୁଢ଼ା ଆକାଶ ରଂଗରେ
ଗାଢ଼ ହୁଏ ମୃତ୍ୟୁ ଏବଂ ଜାଗତିକ
ଶ୍ଳୋକ ଉଚ୍ଚାରଣ ॥

ଘନିଷ୍ଠ ମୁହୂର୍ତ୍ତ ଦେଖ
କେମିତି ଉଦାର, ଧୀର ଏବଂ ଆନୁଗତ୍ୟ
ଦର୍ପଣରେ ମୁହଁ ଦେଖେ,
ଛଳ ଛଳ ଆଖି ଏବଂ ବିଡ଼ଂବନା
ଚେଷ୍ଟାରଭସ୍ପର୍ଶ

ତମେ ମୋର ଜଚ୍ଛକାଚ ବଡ଼ମାର
ଓଧଡ଼ୁଇଁ ଆଂଠୁ ଭାଂଗି ଆଡ଼ୁଆରେ
ଲୋଡ଼ୁ ବସେ ନବଡ଼ୁତା-ଦୈନ୍ୟ !

ସବୁ ଦଂଭ,ଥିଲା ପଣ, ଦୁଜଥାଏ
ଛୁଟ୍ଟି ଛୁଟ୍ଟି ବଂଦୁର ସତ୍ତାରେ ।
ଓନଷ୍ଟୁ ମୁହୂର୍ତ୍ତ ଦେଖ
ଡାକଆଣେ ଘନଘୋର ବର୍ଷା ଏବଂ
ଆଶାଙ୍କିତ ବିସ୍ଫାରଣ କେଉଁଗୋଟି
ସ୍ଥିର ଆବେଗରେ ।।

(୧୯୭୨-ଡ଼ିସେମ୍ବରସଂଖ୍ୟା"ନବରଙ୍ଗ")

# ଷୋଳପହଁରୀ

ବର୍ଷରେ ଥରେ ନା ପାଂଚ ବର୍ଷରେ
ଥରେ ତୁମେ ଓଲାଇ ଦିଅ
ରାଜଦାଣ୍ଡ, ଧୂଳିଧୂସର ଅସନା ଭୂଇଁର
ଚବୂତରା ! ବଢ଼ିଯାଣି ଭଳି
ମାଡ଼ି ଆସୁଥିବା ମଣିଷର ସୁଅ
ମାଦଳର ମଥାରେ ଛୁଟିକ ପଡେ
ତୁମ ସୁନା ପହଁରାର ଦୁଃସ୍ୱପ୍ନର
ଅବର ଗୁଂଣ୍ଡା ହରିବୋଲ୍, କରତାଳ
କୀର୍ତ୍ତନର ହାରିଗୁହାରିରେ
ପୂରିଯାଏ କେତେ ନଡା ଛପର ଘରର
ସଂତ ସଂନ୍ତିଆ ଚୂଲୀର ପାଉଁଶ
ଯା ଭସ୍ମ ଭଳି ପ୍ରଲେପ ଦେଲେ
ନରମି ଯାଏ ଚଢ଼ା ମେଜାଜ୍‌ର ତାତ
ଓ ବତୁରି ଯାଏ ଗ୍ଳାନି ଚଳର
ଗ୍ରେଟ ଗ୍ରେଟ କନଷ୍ଟିବ ଶାଗର ଟିକ ଦାଢ଼ !

ବର୍ଷରେ ଥରେ ଓହ୍ଲାଅ ସିଂହାସନରୁ
ସେ ପାଂଚ ବର୍ଷଯାଏ
ଢୁଙ୍କୁଡ଼ି ମାରୁଥାଅ କ ଆଟୋପରେ,
ରତ୍ନ ପଲଂକରେ । ଜଣାଯାଏ ନା
କମିଶି ସମୁଦ୍ର ମାଡ଼ି ଆସେ ବାଇଶି ପାହାଚର
ଶେଷ ପାହାଚଯାଏ ବା ଖବର କଠଉ

ଶ୍ଳେଟରେ ସିଝିଯାଏ କମିଶ
ହରିବୋଲ୍, ହୁଳହୁଳିର କାହୁଆ ହିଁ ଗହ୍ୱର !
ଅର୍ବୁଦ ଅର୍ବୁଦ ଭକ୍ତଙ୍କର ନାମାବଳୀ
ନଭିଯାଏ ଦାନ୍ତ ନକୁଟାର
ଅଜସ୍ର ଝାଳରେ !

ପାଂଚବର୍ଷରେ ଥରେ ତୁମ ସୁନା ପହଁରାର
ଶକୁଂକଣ ଖଡ଼ିକା ସବୁ
ସିଆଣା ଚୂଟିଆଙ୍କ ଦାଂତକୁ
କମିଶ ପଜାଇ ହଏ ଜାଣ ତ ?
ଖାଲି ଠିଆ ଠିଆ ବା ଅଂଟାଭଂଗା
ରାଜଦାଂଡର ଧୂଳି ଉଡ଼ାଇବା
ଅପେକ୍ଷା କ'ଣ ବୁଝ ନାହିଁ ଯେ :
ମହଣ ମହଣ ଘିଅର କୂଅରେ
ରାଜଦଂଡର ଘାପରୁଖାକୁ ଡେଜିବା
କ ଅବସପଦ ଧୂଂଗୁଡ଼ିର
ପାଂଚଜନ୍ୟ, ବର୍ଷକୁ ଥରେ ନା
ପାଂଚବର୍ଷକୁ ବା ଦଶାଶଦେହକୁ ॥

( ୧୯୭୫ ଜୁଲାଇ " ଝଂକାର " ରେ ପ୍ରକାଶିତ )

## ମହାରାଜାଂକୁ ଗୋଟିଏ ପ୍ରାର୍ଥନା

ପଦ୍ମବାଲ୍, ତୋ ଆଖି ପତାରେ
ଥୋପା ଥୋପା ନଦର ରକ୍ତ, ଓ
ତୋ ହାତ ମୁଠାରେ ଉଦ୍‌ଗ୍ରୀବ
ଆଲୁଅର ତରବାରୀ । ତୋ ଅଂଠୁ ଗଂଠିରେ
ଖୁଂଦ ହେଉଛି ବନ୍ଧୁ ପର ଜଖମ !
ତୁ କ'ଣ ଜାଣୁ ନାହୁଁ ଯେ :
ତୋ ବାବୁରୀ ଚୁଳରେ କେମିତି
ବସା ବାଂଧୁଛି ଅଧୀନସ୍ଥ ପ୍ରାର୍ଥନାର
କଟିମିଟିଆ ଅଂଧାର ! ଓ ତୋର
ଅଚହ୍ନା ରାଜବାଟୀର ଉଦ୍ୟାନରେ
ଫୁଲ ଫୁଟି ଝଡ଼ିବାର ଶବ୍ଦ !
ରେ ମହାରଜା ! ତୋ ଆଖିରେ, ଗାଲରେ,
ଓଠରେ ପହଁରୁଛି ଚହ୍ନା ଅଚହ୍ନା ମାଟିର
କଅଁଳ ଘାସର ଗଂଧ ॥

ଏଣିକି ମୋର କଂଠକର ମୁକୁଟକୁ
ଆସ୍ତେ କରି ଓହ୍ଲାଇ ଦେ, ଓ ତୋ
ଭଂଗା ଗୋଇଠିର ସନ୍ଧିରେ
ସାକି ଧର : ଯେମିତି ରକ୍ତ ଗଳୁଥିବ
ତ ଗଳୁଥିବ, ବନ ପରେ ବନ୍ଧ, ବନ୍ଧ ପରେ ବନ
ଏକ ଅସରଂତ ହସର ଛଟକରେ !
ତୁ ତ ଜାଣୁ : ସବୁ ଶୂନ୍ୟତାର ଆକାଶରେ
କେମିତି ତାରସବୁ ଆଖି ପିଟାଏ । ତୁ ତ

ଜାଣୁ କେମିତ ଫଳ ଭର୍ତି ଡାଳଟା
ନଦକ ପଡ଼ିଛି ଶ୍ରଦ୍ଧାର ବୋଝରେ । ଓ
ତୋତେ ବା କସ ଅଜଣା ଯେ :
ମୁଁ ଗ୍ରନ୍ଥ ଫୁଲେଇ କହିବି,
ଜୀବନଠୁଁ ମୃତ୍ୟୁ ମହାପ୍ରାଣ ବା ମୃତ୍ୟୁ ଏକ
ନିର୍ଭର ବସନ୍ତ ! ଦାଉ ଦାଉ ଖଣ୍ଡ ଠାରୁ
କେତେ ଶ୍ରେଷ୍ଠ, ସ୍ଥିର ଓ ନଗଣ୍ୟ ।
ସବୁଠୁଁ ବଡ଼ କଥା ହଉଚ : ଯେ
ଗୁଂଥି ଜାଣେ ନା ପ୍ରକୃତି ଲତାକୁ, ବା
ଶିବଂକ ମଥାରେ ଚଢ଼ାଇ ଜାଣେ ନା
କାଳୁବାଲୁ ଖେଳର ଚଂପାକୁ,
ତାର ବା ଜୀବନ ଆସିବ କେଉଁଠୁ ?
ତାର ବା ଜୀବନ ପାଇଁ ବାତୁନା ଆଳାପ
କ ଦରକାର ? ରେ ମହାରଜା,
ତୋ ଆଖି ବଂଦ କର । ଏବଂ ତୋର
ବକଟେ ଗ୍ରଇର କଗଟରେ
ମୋତେ ବଂଧା କର ଦେ, ଜଡ଼ା କର ଦେ,
ଖଂଜ କର ଦେ, କାଲ୍ କର ଦେ ॥
ଆଉ ଅଧିକ କ'ଣ ବା ॥

( ପୂଜା ସଂଖ୍ୟା ୧୯୭୪ ' ସପ୍ତର୍ଷି ' ରେ ପ୍ରକାଶିତ )

## ମହାଯାତ୍ରା

ସବୁ କମିଆ, ସବୁ ଯାଦୁଖେଳର ଅହଂକାର
ସବୁ ସ୍ୱପ୍ନ, ସମ୍ପନ୍ନ ଆଭିଜାତ୍ୟର ଫୋଲ ଖେଳ
ଝକାଟଂଖାର ନିରନ୍ଧ୍ର, ଜଂଗଲର ସ୍ତ୍ରା
ପୁନଷ୍ଟ କଂଦାକଠା, ଦସଖୁଟିର ପଙ୍କ
କ'ଣ ଫେରାଇ ଦେବ ଶୋଷକ ଫଣାର କଉଡ଼ି
ଶୋଷି ନେବ ପୁନର୍ବାର ମୋ ସାମ୍ରାଜ୍ୟକୁ,
ମୋ ରାଜତ୍ୱକୁ, ମୋ ଅନୁଶାସନର ସଂଚରିତ ସ୍ୱପ୍ନକୁ !

ଏ ସତ ମିଛ ଖେଳର ଖସ୍ରବେଳ
ଏ ରଂଗରସର ବକଟେ କରାଠର ଶାଂଠପଣ
ଏ ନାବକେଳର ଜହ୍ନ ଆଲୁଅର ଧୂର୍ତ୍ତ
ଇତିହାସର ପୃଷ୍ଠାକୁ, କୁହୁଳ କୁହୁଳ ନିଭିଆସୁଥିବା
ଖଡଗଦାର ଓଦାଳିଆ ପାଉଁଶ ସ୍ତୂପକୁ
କେଉଁଠି ଅଜବ୍ କାଇଦାରେ ଛପିଥିବା
ହିଂଦୁଏ ନିଆଁର ରକ୍ତର ପରିଧିକୁ
କ'ଣ ପୁନଷ୍ଟ ଚିତ୍ର ଦେବ, ତାଂକଦେବ ବେଢ଼ାଇ ଦେବ
ଘନେଇ ଆସୁଥିବା ସଜର ମିଠା କଥା,
ଚୁପ୍‌ଚାପ୍, ଶୁଭ୍ର ଦୃଷ୍ଟିର ଆଖିପତା !

ମୋର ସମସ୍ତ ଫଳିତ ପାପର ସ୍ୱର୍ଗ
ମୋର ସମସ୍ତ ନିରଭିମାନ, ସରଳ କଠୋରତା
ମୋର ସମସ୍ତ ବିଶ୍ୱସ୍ତ ସ୍ନେହର ଶୁଦ୍ଧ ଅହଂକାର
ମୁଠାଏ ଅନ୍ନର କ୍ଷୁଧାରେ ପୂରିଯିବ
ବିଂଦୁଏ ଚଂଦନର ତିଳକରେ ଭୁଲିଯିବ
ଜଣାଣର ସାମାନ୍ୟତମ ଶବ୍ଦର ତରଳତାରେ
ସରିଯିବ ଶେଷ କଥା ! କିଏ ଜାଣିଚି ଯେ
ଏଇ ଶେଷ କଥାର ଶୋଷ, ଏଇ ଶେଷ
ପଦଟିର ଉଦାତ୍ତ, ନିରାପଦ ସଂକ୍ରମଣ
ମୋର ସମସ୍ତ ଦୃଶ୍ୟ ଓ ଅଦୃଶ୍ୟ ଫୁଲବଣକୁ
ମୋର ସମସ୍ତ ଘୃଣ୍ୟ ଓ ନମସ୍ୟ ଦୈବତ କ୍ଷମାକୁ
ମୋର ସମସ୍ତ ତ୍ୟାଜ୍ୟ ଓ ପ୍ରାପ୍ୟ ପୁରସ୍କାରର ଯୌବନକୁ
ନିଶ୍ଚିହ୍ନ କରିଦେବ ମାତ୍ର ଗୋଟିଏ ଫୁତ୍କାରରେ,
ମାତ୍ର ଗୋଟିଏ ସିଦ୍ଧ ମୁହୂର୍ତ୍ତର ଆତସବାଜିରେ !

ଖଂଡା ଖେଳର ଟାଂଗର ପଡ଼ିଆରେ
ଆଜି ଗଜୁରିବ ନାହିଁ ଘାସର ଚେର,
ପିଚ୍ଛିଲା ଦିନର
ବାଲି ସ୍ତୂପକୁ ଝୁଂଟିବ ନାହିଁ ନଂଡା ପାହାଡ଼ର ଶୃଂଗ,
ଗେରୁଆ ସଂଜର ସନ୍ନ୍ୟାସିନୀର ସୀମଂତକୁ
ଝଲକାଇ ଦେବ ନାହିଁ ଅମାବାସ୍ୟାର ଚଂଦ୍ର
ବା ବାସ୍ନାଭରା ତାତଲା, ଉତ୍କୀର୍ଣ୍ଣ ମୁଖର
ଅଶୋକ ବନକୁ ଓଜାଳି ପକାଇବ ନାହିଁ
କୋଟି କୋଟି ସୂର୍ଯ୍ୟର ହଣାଖେଳ ।

ଅଂତତଃ ନିଶ୍ଚୁପ ॥ ୨୦

କେବଳ ଯାହା ଚହଟୁଥିବ ସମସ୍ତ ଚେଷ୍ଟାର ଐଶ୍ୱର୍ଯ୍ୟ
ମିଛ କାଂଦଣାର ରଙ୍ଗ ପକେଟରେ, ଅସ୍ପଷ୍ଟ
ଦୋ-ଦୋ-ଛାୟା ମୂର୍ତ୍ତିର ଠୁକୁସ ଠୁକୁସ
ଦର୍ପଣର କାଚରେ, ବେପରୁଆ ଗୀତର ତାଲ

ନହଡ଼ ଭାଂଗୁଥିବ କେବଳ
ଜସର ଆଖିପତାରେ ଝୁଲୁଥିବା
ମଂଦାର ଫୁଲର ଜଦରେ, ଖୁବ୍ ସତର୍କରେ ।

ସବୁ ତ ନିଶ୍ଚିହ୍ନ ହବ, ଧରବଂଧା ସୁଅର ଧକ୍କାରେ,
ମାତ୍ର ଗୋଟିଏ ପିଙ୍ଗ ମୁହୂର୍ତ୍ତର ଆତସବାଜିରେ ॥

('ଝଂକାର' ୧୯୭୫ ନଭେମ୍ବର ସଂଖ୍ୟାରେ ପ୍ରକାଶିତ)

# ଗୋଟିଏ ପ୍ରଗୀତ

ଯାହା ଲଟ୍‌କି ଯାଏ
ଝୁଲନ୍ତ ପକ୍ଷୀ, ଯାହା ଝଟ୍‌କନା
ଝପ୍‌ଟି ଯାଏ ଡାଳରୁ ଡାଳକୁ
ପତ୍ରରୁ ଶିରକୁ, ଶିରରୁ ରକ୍ତକୁ
ଘୂମନ୍ତ ଗୀତର ନୈବେଦ୍ୟ : ତା' ତ
ତୁମର ଆଶୀର୍ବାଦର ଅନ୍ୟନାମ
ରେ ମହାନଦୀର ତାପିତ ଜଳ :
କେମିତି ବୁଢ଼ା ହୁଏ ବୟସର ନେଳୀ ବୃକ୍ଷ
ବା ହଲଚଲ, ଚହଲ ଆଷାଢର ନମିତ ଆକାଶ ! !

ଯାହା ଲଟ୍‌କି ଯାଏ, ଝୁଲନ୍ତ ପକ୍ଷୀ ।
ଯାହା ଝଟ୍‌କନା ଝପ୍‌ଟି ଯାଏ
ସୁନା ମାଟିଆର ନିଃଶବ୍ଦ ଗୁମାନ,
ରେ ମହାନଦୀର ତାପିତ ଜଳ :
କେମିତି ବୁଢ଼ା ହୁଏ ବନ୍ମୂସର କାରିଗର
ତା ଦଂଅଡା ନହରଣ ଶ୍ୱାସରେ
ବା ଊର୍ଦ୍ଧ୍ୱବାହୁ ମାଟିର କାନ୍ଦଣାରେ ?

କେହି ତ ବୁଝେ ନା କା'ର ଦୁଃଖ ।
କେହି ତ କଳା କଳା ଡୋଳାର ପରଳ
ଚକ୍ଷୁ ଦେଖେ ନାହିଁ ତାର

ବିମୋହନ ଆଲୁଅର ମୂର୍ତ୍ତ ବିଂବ
ବା ସାମାନ୍ୟ ଭିତରୁ ଅସାମାନ୍ୟ ଛଂଦ
ର ଶିହରିତ ସୁବର୍ଣ୍ଣ ମୁହୂର୍ତ୍ତ,
ଅଥବା କାର ସମ୍ଭବନାର ଚଉପାଢ଼ୀରୁ
ଖସି ପଡ଼ୁଥିବା ଝୁଲଂତ ପକ୍ଷୀର
ସ୍ୱାଧୀନ ଅକ୍ଷର : କିଏ ବୁଝେ କାର ଦୁଃଖ ?
ଦୁଃଖ ଏକ ଚିରନ୍ତନ ନଈ
ଏବଂ ନଈ ଅଟେ ମୁକ୍‌ତ ହସ :
ସମୁଦ୍ରର, କଳକଳା ରଡ଼ି ବା ପର୍ଷୀର ॥

# ପ୍ରତିଧ୍ୱନି

ଏକ ଅନଶ୍ଚିତ ସନ୍ଧ୍ୟା :
ଭଗ୍ନାଂଶ ଓ ସ୍ଥିରୀକୃତ ବ୍ୟକ୍ତିତ୍ୱର ଛବି
କାଗଜ ଡ଼ଂଗାଟେ ପରି
ଭସିଯାଏ ଘନମାଳ, ଭଂଗୁର ଓ
ବର୍ତ୍ତମାନ ଦୁଃଖର ନଈରେ ;
ହଠାତ୍ ନସ୍ତବ୍ଧ ସ୍ନେହ
ଫୁଲହୋଇ ଦୋହଲଇ
ଅଂକାବଂକା ରାସ୍ତାର ଗୁଳ୍ମକୁ ଭେଦ
ବଢୁଥିବା ବୃକ୍ଷକଂର ଉଦ୍ଧତ ଭଂଗୀରେ ।

ଏବେ କଂଭୁ ଅସ୍ଥିରତା,
ଦେହାଶ୍ରିତ ଦୁଃଖ ଏବଂ ସାମାନ୍ୟ କରୁଣା
ନମମୟ ସକାଳର ଗୁଳ୍ମପରି
ଦେଖିଯାଏ ଶସ୍ୟମୟ ସବୁଜ କେଦାର,
ଯାବଜ୍ଜୀୟ ଅନ୍ତକାୟ ଶଂକାର ଗୋଡ଼ରେ
ଛଡ଼ମୋଡ଼ ହୁଏ କେଉଁ
ଅଗ୍ନାଅଗ୍ନି ବନସ୍ତର ବୃଦ୍ଧ ଅଜଗର ।।

ମନେହୁଏ : ସବୁ କଣ୍ଟ ଦାୟିତ୍ୱ ଓ
ଜଂଜାଳର ହାଡ ସବୁ ଚୂର୍ଣ୍ଣ ହୁଏ,
ହୁଏ ଏକ ନଷ୍ଟାପର ଭୃତ୍ୟ ଏବଂ

ଅନୁରକ୍ତା ବୃଦ୍ଧା ଧର୍ମପତ୍ନୀ
ମୋ ଭିତରେ ସାରଂଗୀ ବଜାଏ କଏ ?
ଅନାବନା, ଧ୍ୱସ୍ତ ପଦଗୁଡ଼ା
ପାଲଟିଯାଏ ସାଂତ୍ୱନାର ରାଜ୍ୟ, ରାଜଧାନୀ !

ମୁକ୍ତ ତେବେ କେଉଁପରି
ଆସେ ମୋର ବନ୍ଦ କୋଠରୀକୁ ?
କେଉଁପରି ସ୍ଥିର, ଶାଂତ, ପଥଚ୍ୟୁତ
ଗୀତ ସବୁ ଘନୀଭୂତ ହୁଏ ମୋର ନିଷିଦ୍ଧ ନଅରେ ?
କେଉଁପରି ଜଖମି ଠେକୁଆ ଏକ
କାକୁସ୍ଥ କାକୁସ୍ଥ ଦୃଷ୍ଟି
ଶାଣୁଥାଏ ପଦଧ୍ୱନ, ନଗ୍ନ ଟିଆ
ଉନ୍ମଂକର ଫାଜଲାମି, ସ୍ୱପ୍ନର ସକାଳେ !

ସବୁ ସତ୍ୟ, ସବୁ ମିଥ୍ୟା ।
ମିଥ୍ୟା ଏବଂ ସତ୍ୟର ସହର
ନିର୍ଜ୍ଜିତ ମାଆର ଗ୍ରୁଡ଼ ଖୋଜୁଥାଏ
ଗ୍ଲେଚ ପିଲା ପରି ।
ସବୁ କିଛୁ ସ୍ଥିରତା ଓ ଅସ୍ଥିରତା
ଉଭୟରେ ଇତସ୍ତତଃ ଲୁଚିଯାଏ
ଜୀଇବାର ଦଂଭ ଏବଂ
ପରିପୂର୍ଣ୍ଣ ବ୍ୟକ୍ତିତ୍ୱର ଖଂଡ ପ୍ରତଧ୍ୱନ ॥

'ନବରବି' ରେ ପ୍ରକାଶିତ

# ମଂଚ

ଆଜ ଅଂଧାରରେ ବସି
କିଛି ନଶୂନ୍ ସ୍ତବ୍ଧତାର କେଂଦ୍ରରେ
ଘାତୁକ କରିବା କ'ଣ ଲୋଡ଼ା ?
ଜଣେ ନହେଲେ ତ ନେତା ବା ନେତ୍ରୀଂକ
ମୁହଁ, ପାଉଡ଼ରମଖା ହାତ ଦଶୁ ନାହିଁ
ବହଳ ବାଳର ଜଂଗଲ ଭତରୁ ॥

ଏବେ ଉଠିଆସ । ସିଧା ସିଧା
ତୁମ ପଶୁ ସତା ଗୀତର ଚୈତ୍ୟକୁ ।
ରେ ଦେଖଣାହାରୀମାନେ, ସବୁ ଉତ୍କଣ୍ଠାର
ଧୈର୍ଯ୍ୟକୁ ଆସ୍ତେ ଚୁପି ଦଅ
ତୁମ ଶଂଖାର ଦଂଥଡ଼ା ଗୋଇଠିରେ
ଓ ମାତ୍ର ଗୋଟିଏ ଦୀର୍ଘଶ୍ୱାସରେ
ନାଚି ଯାଉ ତୁମ ଗୋପ୍ୟ ଠିକଣାର ଛାଇ
କଳା ପରଦାର ଗୁଣ୍ଠରେ ॥

ଏକ୍ଷଣି ପବନର ଧୀର ସ୍ଥିର ଓଠର
ପର୍ଦ ହଲବାକୁ ଆରଂଭ କଲାଣି, ଓ
ଶବ୍ଦର ଇଂଦ୍ରଧନୁ ଭଳ ବଂକା ଭଂଗୀରେ
ଯାକ ହେଇ ଯାଉଚି ସବୁ ଅସତ୍ୟ-ଇଲାକା,

ବା ପରସ୍ପରର ବ୍ୟାଖ୍ୟା ବୁଦ୍ଧିର ଫାଶରୁ
ଛୁଟିକି ପଳାଉଛି ସବୁ ଧୈର୍ଯ୍ୟ, ସବୁ ଉତ୍କଣ୍ଠାର
ଅଣନିଃଶ୍ୱାସୀ ମୁକ୍ତିର ଅକ୍ତିଆର ॥
ଭୁଲରେ ଥରେ ପଛକୁ ଫେରି ଚାହିଁ,
ଦେଖିବ : ମଂଚ ଅଂଧାର ଓ ଆଲୁଅର
ଦୋଛକରେ ବସିଛି ମାତ୍ର ଜଣେ ।
ତାର ଉଲ୍ଲସିତ ହୃଦୟ, ହାତର ଲେଖକୀୟ ମୁଦ୍ରା
ଏବଂ ଚଂଚଳ, ଅଥଚ ଦୃଢ଼ନିବଦ୍ଧ ଦୃଷ୍ଟିର ବଳୟରେ
ଯାହାଂକ ପହରର ବହୁ ସନ୍ଦେହ ମିଶା ବର୍ଷା ।
ଯାହା ଏଇ ଧୈର୍ଯ୍ୟ ଓ ଉତ୍କଣ୍ଠାର ସମର୍ଥ ମାଟିକୁ
କୋଳେଇ ନଉଛି ବଡ଼ ଆହ୍ଲାଦରେ,
ବଡ଼ ସୋହାଗମିଶା ଯଂତ୍ରଣାରେ ॥

( ସମାବେଶ ' ୧୯୭୪ ' ଡ଼ିସେମ୍ବର୍ )

## ବର୍ତ୍ତମାନର ଆର୍ଶିରେ

ମଝି ଦରିଆରେ ଢେଉଙ୍କର ଲୁଚକାଳି ।
ସବୁ ଭଂଗା କଂଢ଼େଇକୁ ନେଇ
ବାଲିରେ ପୋତିବା ମୂର୍ଖ । ସବୁ ଖଂଡ଼ିତ
ସ୍ୱପ୍ନକୁ ମିଶାଇ
ଜୀବନକୁ ରଂଗେଇବା ମିଛ !

× × ×

ଟୁକୁରା ଟୁକୁରା ଦୁଃଖର ସ୍ପନ୍ଦରେ
ନିଜକୁ ମୁଁ ଆଉଟିବି କାହିଁ ? କିଂବା,
ଇତସ୍ତତଃ ଫୁଲ ଏବଂ ଫରୁଆର ସଂସର୍ଗ ଭିତରୁ
ଫଗୁଣର ଯୋଗ ସୂତ୍ର ଖୋଜିବି କାହିଁକି ?
ବରଂ ଆପଣାକୁ ଓ ମୋର ଅପଣାର

କଳାବଳ ସୁସ୍ଥ ବ୍ୟକ୍ତିତ୍ୱକୁ ବେଖାତିର ଖବର ବାହାନା
ଦେଖାଇବା ଶ୍ରେୟସ୍କର ! ଯେହେତୁ ମଲ୍ଲ ଦୁବଘାସକୁ
କଚୁକଚୁ ଦେବା ମୋଟେ ଅନ୍ୟାୟ ବ ନୁହେଁ !
ବର୍ତ୍ତମାନ ଭଂଗା କାଚସବୁ ତୀକ୍ଷ୍ଣ ଆଲୁଅରେ
ମୋ ଦୃଷ୍ଟି ଚଳାଏ ଏବଂ ସରୁ ସରୁ ନଈର ମୁହାଣେ
ଅତର୍କିତେ ଧକ୍କା ଖାଏ ଖେଳୁଥିବା ମାଛର ସୁଲକ୍ଷ ॥

ବସନ୍ତର ଫୁଲଦାନି ସଜାଇବ ? ଫୁଲପୁଣି ଆଣିବ କେଉଁଠୁ
ବଗିଚ୍ଚ ଉଜୁଡ଼ିଗଲା । ମାଳୁଣୀ ମୋ ସାତପର ଜଳା
ସାତସିଆଁ ମମତାର ଉଷ୍ମ ମୋ କାନ୍ଧୁ ଉଡ଼ିଗଲା !
ସ୍ୱପ୍ନ ସବୁ ଉଡ଼ିଗଲା । ରକ୍ତ କଇଁ ରକତେ ଗାଧୋଇ
ଫୁଲେଇ ଓଠାରି ନେଲା ଆପଣାର ଭକ୍ତର କଂଢେଇ ।।
ବର୍ତ୍ତମାନ ଉଖାରିବାର ଆପଣାକୁ, ଆପଣାର ସଂପତ୍ତିକୁ
ଗୋରୁ ଦାଂଡ଼ ବେଳ । ଏଇଠି ମୋ ଯଂତ୍ରଣାକୁ
ଗେହ୍ଲୁ କରି ଢେଉଂକର କରତାଳି ଶୁଣିବାର ସ୍ୱସ୍ତିର ସକାଳ
ଓଁ ସତେଇରେ ସାତ ଗାଂଧି ବସନ୍ତକୁ ବନ୍ଦଲେଇ
ସପନକୁ ଭସା ଦେଇ ଭୁଞ୍ଜାଠାରେ ହସିବାର ଫୁଲାଣ ବେଶର !
(ମୁଁ ଜାଣେ ଢେଉସବୁ ମିଛୁଆ ଓ କଂଢେଇଂକ ନବୋଧ ଆଖିରେ
ବର୍ଷା ସବୁ ଲୁହ ଏବଂ ଲୁହ ସବୁ ବର୍ଷା ବାହାନାରେ...)
ତେଣୁ ଆଜ ଭୁନଚାନ ସୂତ୍ରର ଜଂଘରେ
ଯଂତ୍ରଣାର ମଥାରକ୍ଷି ଥାପୁଡ଼ିଲେ କ୍ଷତ କ'ଣ ??

(ନୂତନ ପ୍ରସ୍ଥ ଦିଗଂତ ଓ 'ଆଜକଲ୍' ରେ ଏହାର
ଉର୍ଦ୍ଦୁ ରୂପାଂତର ପ୍ରକାଶିତ)

# ଶୂନ୍ୟବାଣୀ

ନା ମାଟି ନା ଆକାଶ,
ନା ଏକ ଚଳଂତି ଶବ୍ଦର
ଏକକ ଅରଣ୍ୟ ! ନା ଉତ୍କୀର୍ଣ୍ଣ
ମୁହୂର୍ତ୍ତ ପରି ରଂଗହୀନ
ସ୍ମୃତି । ନା ମାଟି ନା ଆକାଶ,
ନା ଏକ ଶୂନ୍ୟ ଚଉତରା ।
ନା ଦାଗ ନା ଦାଗଂତର ଆଖି
ଢଳ ଢଳ ବଇଶାଖୀ ହାଓ୍ୱାର ବଖରା ।।

ନା ରକ୍ତ ନା ମୁକ୍ତି
ନା ଏକ ଛଂଦହୀନ ସମର୍ପିତ ଓଠ ।
ନା ଏକ ନିଷ୍କପଟ ଦୃଶ୍ୟ ଆତୁରତା
ନା ସ୍ନେହ ନା ସ୍ନେହୀ ନା କ୍ଷୋଭର
ନିଷ୍ଫଳ ମୁହୂର୍ତ୍ତ । ନା ଆସନ୍ନ ସକାଳ
ପରି ଶୂନ୍ୟ ଏକ ରଂଗୀନ୍ କୋଥଳୀ !
ନା ଏକ ରକ୍ତ ମୁହାଁ ଚାପ
କିବା ବିଗଳିତ ଲୁହର ଅଂଜଳି !!

ନା ମାଟି ନା ଆକାଶ
ନା କୂଳ ନା ଅଥଳ ସମୁଦ୍ର,
ନା ଏକ ଅଗାଧର କୂପର ପ୍ରାଚୁର୍ଯ୍ୟ ?
ନା ରକ୍ତ, ନା ଅର୍ଥ ନା ଅନର୍ଥର
ଉତ୍କୂଳ ସରିତ । ନା ସ୍ନେହ, ନା ପ୍ରୀତି
ନା ଏକ ପ୍ରତାରିତ ସତ୍ୟର କୁହୁକ !

## ସମର୍ପଣ

ବରଂ ନଷ୍ଟ୍ରୂପ ଆଖି
ଛଳ ଛଳ, ଆଶ୍ୱିନର ଖରା ।
ହାରବଂଦ ଫଗୁଣର ହଂତସ୍ତଂତ,
ଭୁନ ଚାନ ଆଷାଢ଼ର ବବସ୍ତ ଅସରା
ଢେ଼ର ଭଲ ! କଂଦାକଟା ମୌସୁମୀର
ଗ୍ଲାଇ ସେରା ଲୁହର ଫସଲ ॥
ତୁମ ଛଡ଼ା କଏ ଜାଣେ : ଡ଼ାଳ ଭଂଗା ମୁହୂର୍ତ୍ତର
ମୌନମନ୍ତ୍ର, ଦୁରଂତ କୌଶଳ !!

ହେ ଈଶ୍ୱର, ସଂହାରର ଅବତାର,
ତୁମରି ବେପଥୁ ହସ୍ତେ
ମୋ ସୁନାର ମଧ୍ୟାହ୍ନ ଅର୍ପିବା
ଏକ ଭ୍ରମ, ଏକ ଅଶ୍ରୁସ୍ନାତ ମଧ୍ୟରାତ୍ରି !

ବରଂ ନଷ୍ଟ୍ରୂପ ଆଖି
ଛଳ ଛଳ ଆଶ୍ୱିନର ଖରା
ପିଇ ନେଉ ତୁମ ଦୁଃଖ,
ତୁମ ଡ଼ମ, ତୁମ ଭଂଗା ଗଢ଼ା
ପୃଥ୍ୱୀ, ଦେହର ଅବଂଶ ॥

( 'ନବରବି' ୪ର୍ଥବର୍ଷ ପ୍ରଥମ ସଂଖ୍ୟା ଜୁଲାଇ ୧୯୭୪ )

# ଶତ୍ରୁ

କିଏ ସେ ତା ସ୍ତୁତି ଛୁଇଁ
କଣ୍ଟକ ଗହ୍ୱରେ : ଯେ
ମୋର ଜଣେ ହେଲେ ଶତ୍ରୁ ନାହିଁ ।।

ଶତ୍ରୁ ତ ଅଦୃଶ୍ୟ ନୁହଁ,
ଆଲୁଅର ଉଦାସ ବର୍ଣ୍ଣାଳି ;
ଫିଂଗେ ଦୀର୍ଘଶ୍ୱାସ, ସ୍ମୃତିର ଟେକୁସ—
ଗୋପ୍ୟ ପ୍ରେମ, ଜାଲ୍ କାଠି
ପୁରାତନ କ୍ରୋଧର ଭଗ୍ନାଂଶ ।
ଶତ୍ରୁଟେ ନ ଥିଲେ : ଜଣାହୁଏ
ଖାଅଂଚା ମଣିଷ ମୁହଁ
କଳଂକିତ ଗଜଦନ୍ତରବାସ !

କିଏ ସେ ତ ଚନ୍ଦ୍ରବିଂବନେ
ଭୁଲାଇ ଭୁଲାଇ ଉଦ୍‌ଘୋଷିବ : ଯେ—
ଜଣେ ହେଲେ ଶତ୍ରୁ ନାହିଁ,
ତେଣୁ ମୁଁ ସମ୍ରାଟ୍, ଏବଂ
ଅଦୃଷ୍ଟ ସତ୍ୟର ଉତ୍ତରାଧିକାରୀ !

ଯେ ଶତ୍ରୁର ଦର୍ପଣ ଓ ସଳଖ ବାଣର
ନୁହଁଇ ଶରବ୍ୟ, ବା ଶତ୍ରୁହୀନ ଗଜରୁ ଯାହାର

ସେ ତ ଏକ ମେଂଢା—
ନିଜସ୍ୱ ଦୁଃଖର କୋହ
ନିସ୍ପନ୍ଦତା ନାଳକୁ ଫିଂଗଇ,
କଏ ଯେ ତା ଗୁଣ ଛୁଇଁ
ଦର୍ପ ଏବଂ ଚକିତ ସ୍ମୃତିରେ
କହିବ : ସେ ଜଣେ ହେଲେ ଶତ୍ରୁ ନାଇଁ ॥

ଶତ୍ରୁ ଯାହାର ନାଇଁ
ସେ କି କୋଣାର୍କ ବା
ଖଜୁରାହୋ ଭିତ୍ତିଚିତ୍ର,
ମିଳନବାନା ?
ନିରର୍ଥକ ସମୟର ଅଭ୍ୟାସର,
ଲକ୍ଷ୍ୟହୀନ ପାର୍ଶ୍ୱବସ୍ତା,
ଅପାଂକ୍ତେୟ, ବ୍ୟାଧିଗ୍ରସ୍ତ
ଶ୍ୱାସ ଏବଂ ପ୍ରଶ୍ୱାସର ଗୁଇ ।
ଶତ୍ରୁ ବା କାହାର ନାଇଁ ?

ଆଲୁଅ ପ୍ରଥମେ ଛୁଏଁ
କାହାକୁ ? ପାହାଡ ନା ସୁଦୀର୍ଘ ବୃକ୍ଷକୁ ?
ଅଂଧାର ପ୍ରଥମେ ଚୁମେ
କାହାକୁ ? ସଂଜକୁ ନା ଦୀପର ଶିଖାକୁ ?
ଶତ୍ରୁ ତେବେ ଆଲୁଅ
ନା ଅଂଧାରର ଲୁଚକାଳି ?
ଏକ ଧାତ କୁହୁଡ଼ିଆ ଭୂଇଁ ।
କଏ ସେ କହିବ ଗୁଣ ଛୁଇଁ : ସେ
ଜଣେ ହେଲେ ଶତ୍ରୁ ନାଇଁ ॥

(୧୯୭୩ ଡ଼ିସେମ୍ବର 'ନବରବି'ରେ ପ୍ରକାଶିତ)

## ସ୍ୱକୀୟ

ଉଚ୍ଛଳ ହେଲେ ଶବ୍ଦର ତରଂଗ
ସ୍ତବ୍ଧ ହୁଅ । ଧୀର ଏବଂ ଶାଂତ ଆହ୍ଲାଦରେ
ଶୋଇପଡ଼ ଯୁଗ ଯୁଗାଂତର ।
ମୋ ରକ୍ତର ମାଳହ୍ରଦ
ପିଇ ନେଇଛି ଏ ଯାବତ୍ ସ୍ୱୀକୃତ
ଆଧିପତ୍ୟ, ପ୍ରୀତି ଏବଂ ସଂହଣାର ସ୍ୱର ॥

ଭିନ୍ନ ହୁଅ ହେ ଶବ୍ଦ, ହେ ତରଂଗ,
ହେ ଶାଂତ ଅଧୀର ଆକାଶ ।
ତୁମ ସ୍ୱଚ୍ଛ ଦର୍ପଣର ହସ ଏବଂ କରୁଣ ଦୁଃଖରେ
ମୁଁ କ୍ରମେ ଭିଜିଯାଏ
ବର୍ଷାଋତୁର ଅଂଧକାର ଘେରେ ।
ଭିନ୍ନ ହୁଅ ହେ ମୁହୂର୍ତ୍ତ, ହେ ମୋର ଧୂର୍ତ୍ତ ପାରଗତା,
ଛଡ଼ ନାଇଁ ମୋ ଭିତରେ ତୁମ ମୁହଁ
ଲୁଚିବାରେ ।
ଲଭ ନାହିଁ ଯାଯାବର ଇଚ୍ଛାର ଡ଼ିଂବନୁ
ଧାଇଁ ନାଚିବାରେ ।
ଆପଣାର ନଷ୍ଟ ବୟସକୁ
କେଂଦ୍ର କରି ବାରଂବାର
ସ୍ୱପ୍ନ ପରି ଘୂରିବାରେ ॥

ଝିନେ ହେଲେ ଶାଂତ ହୁଅଁ ।
ସ୍ଥିର ହୁଅ ହେ ବଂଧୁ, ହେ ଆଜ୍ଞାଣ,
ହେ ରକ୍ତର ମାଳ ହ୍ରଦ ।
ମୁଁ କ୍ଷଂଗିଢ଼ଏ ସାମାନ୍ୟ ନସ୍ଥାର କାରଗଣ
ହାଡ଼ ଏବଂ ମାଂସର ପୃଥିବୀ ॥

୧୯୭୩ ମାର୍ଚ୍ଚ 'ନବରବି' ରେ ପ୍ରକାଶିତ ।

# ବିମୂର୍ତ୍ତ ଶୋକ

ହେ ମୂଢ଼ କାପାଳିକ, ସନ୍ଧ୍ୟାର ଉତ୍ସବରେ
ତୁମର ନିଃଶ୍ୱାସେ ଘୂରେ ବିଷମୟ
ପୃଥିବୀର ପବନ । ହେ ଜାରଜ, ବିଶ୍ୱସିତ ମୁହୂର୍ତ୍ତର ରଂଗ
ସ୍ମୃତିର ଉତ୍ସବରେ : ତୁମର ହସରେ ଝୁଲେ
ପରିଷ୍କାର ଆକାଶ ଓ ମୋ ପ୍ରସ୍ତୁତି, ଖଗର ଆଖଡ଼ା ।
ତୁମ ବିନା, ହେ କୃତଘ୍ନ ନିଷ୍ଠୁର କାରୁଣ୍ୟ
କିଏ ବୁଝେ ? ବିଜାଣ୍ଡପୁ ଚେତନାର ଅଦ୍ଭୁତ ଖସଡ଼ା ॥

ସଞ୍ଜ ଏବଂ ସକାଳର ଅପାପ ଗର୍ଭକୁ
ବିଂଦୁ କ'ଣ କରେ ଗର୍ଭବତୀ ? ଦୁଇ ଦିଗଂତର ବିଂଦୁ
ସତେ କ'ଣ ଯୋଡ଼ି ଦିଏ ଶୂନ୍‌ଶାନ୍
ସ୍ମୃତିର ଉତ୍ତପ୍ତ ହାତ ? ଏବଂ ଏକ ସ୍ଥିର ହାଓ୍ୱା
ସଂତର୍ପଣେ ଗୁଡ଼ି ନିଏ କୁହୁଡ଼ି ଓ କୁହୁର ପ୍ଲାବନ ?
ହେ କୃତଘ୍ନ କାପାଳିକ, ସଞ୍ଜର ଉତ୍ତାରେ
ତୁମର ପଲକେ ଘୂରେ ଗୃହହରା ସ୍ନେହ ଏବଂ
ଅନାସକ୍ତ ଅଂଜଳିର ଫୁଲ
ଏଣେ ତେଣେ । ଏକାକାର ବିଂଦୁ ଓ ପରିଧି ।
ତୁମ ବିନା କିଏ ଜାଣେ ? ନିଷ୍ଠୁର ଅଧୀର ବ୍ୟଥା
ସ୍ତମିତ ସଂହଣାର ବ୍ୟାଧି ।

ହେ ଶିଶୁ, ଅନାସକ୍ତ ଦୁଃଖର ସଗୁଣ,
କିଏ ଛୋଡ଼େ କାହାକୁ ଓ ଛୋଡ଼ିବାର କ୍ଲେଶ
ସଞ୍ଜ ବା ସକାଳ କେହି ନିରୁତ୍ତର ମୁହେଁ

ଶବ୍ଦଟିଏ ଓଠେ ଧରି ମସ୍ତୁଲଟି ପରି
ପାରିବ କି କହ । ହେ ପ୍ରିୟ, ବିନମ୍ର ଆଷାଢ଼
ତୁମ ବିନା କିଏ ଜାଣେ ବିଂଦୁରୁ ସିଂଧୁର ସୃଷ୍ଟି
କିବା ଦୁଇ ଭିନ୍ନ ସତ୍ତା ମିଶାଣ ଫେଡ଼ାଣ ॥

ହେ ଚପଳ, ଧୂର୍ତ୍ତ, ସ୍ଥିର, ଅବାଙ୍ମୁଖ
ଆବେଗର ଢ଼ମପଣ; ତୁମେ ଜାଣ
କେଉଁପରି ଫୁଲ ମିଶେ ସକାଳ ଗର୍ଭରେ ?
ବା ଏକ ଅନୂଢ଼ା କିଶୋରୀ ପରି ସକାଳକୁ
ଗର୍ଭବତୀ କରେ କିଏ ? ବିମୂର୍ତ୍ତ ଶୋକରେ ।
ତୁମେ ଜାଣ ହେ କୃତଘ୍ନ, କେଉଁପରି
ଶବ୍ଦହୀନ ଆକାଶର ଗୁପ୍ତ ଛଳ
ଫାଟିପଡ଼େ ପକ୍ଷୀଙ୍କର କାକଳି ଓ ଧୂସର ମେଘରେ ॥

( 'ନବରବି' ରେ ପ୍ରକାଶିତ )

## ବର୍ତ୍ତମାନ

ଏରୁଂଡ଼ ବଂଧରେ ଠିଆ ହେବାକୁଇଁ ମନା ।
ଏ ବଂଧର ଦୁଇପାଖେ ପୁରୁଣା ଓ ନୂଆର ଅଗଣା ।।
ଚଉଢ଼ରେ ମଉଳିଲା ଦୁବଘାସ
ବଡ଼ ରୁକ୍ଷ, କରୁଣ, ବିବର୍ଣ୍ଣ ।
ଭଂଗା ଭଂଗା ସୁରର ମୁର୍ଦ୍ଦାର ନାଚେ
ଛାଇଦେହ : ଜଳ ଜଳ ଦିଶେ ଚା'ର ହସ ।
ପୋକ ଖିଆ ଦାଂତର ରଂଗରେ
ଶୀଉଳି ଓ ଧୂସର ଦରଂଚ ।।

ଚଉଢ଼ରେ ଲକ୍ଷଣ ସ୍ଥିରତା ।
ଯା'ର ନାହିଁ ହାତ ଗୋଡ଼ । ଅଛି ମାତ୍ର ସ୍ଥିତି
ସ୍ପଂଦହୀନ ବାଲିର ସମୁଦ୍ର ତଳେ
ଦକ ଦକ ନିଆଁଇଁ ଜଳୁଚି !!

ଆରପାଖେ ବସନ୍ତର ଢେଉ
କୂଳଖାଏ । କୂଳବାଂଧେ । ଫିଂଗେ ନୂଆ ହସର ଅଂକୁର !
ଗୋଟାଏ ବି ଝରୁଥିବା ଫୁଲର ପାଖୁଡ଼ା ପୁଣି ।
ଲେଟି ଯାଏ, ଗଡ଼ିଯାଏ ଏ କୂଳରୁ ସେ କୂଳ
ନିହାତି ଅସ୍ଥିର ନଈ । ନିହାତି ଉତ୍କୂଳ ।

ଯାହାର ଗର୍ଭରେ
ହାଉଯାଉ ହୁଏ ବହୁ ସ୍ୱପ୍ନର କୁଂଭୀର

ଏରୁଂଡି ବଂଧରେ ଠିଆ । ଚଉଦଗେ
ଦ୍ୱଂଦ୍ୱ ଏବଂ ସଂଘର୍ଷର ଛାଇ । କୁହୁଡ଼ିର ଜାଲ
ଏବଂ ଜାଲୁ ଜାଲୁ ଗ୍ଲାଇ···ଆଲୁଅର ସୁଂଦର ଚେହେରା
ଦୁଇବାହୁ ଭଙ୍ଗେ ମୋର । ମୁଁ ନାସ୍ତର । ମୁଁ
ଏକାଂତ ଭାବେ ମୋର, ଏକାଂତ ନିଜର ।
ଦୁଇ ପାଖେ ଦୁଇ ନଈ ହୁଏ ଏକାକାର ।

ତେଣୁ : ସବୁ ଆପେକ୍ଷିକ ଯଂତ୍ରଣା ଓ
ଧୂର୍ତ୍ତ ମୁହୂର୍ତ୍ତକୁ ଭୁଚ୍ଛାଟାରେ, ଅନ୍ୟ ମନସ୍କରେ
ଦୁଃଖର ଗୋଇଠି ଚୁପି ବିମର୍ଷ କରିବା ଠାରୁ
ତୁମକୁ ମୁଁ ନିର୍ବିକାରେ କରେ ଅଂଗୀକାର ॥

( 'ଝଂକାର'ରେ ପ୍ରକାଶିତ )

## ଜଣାଣ

ମୋର କୌଣସି ନିର୍ଦ୍ଦିଷ୍ଟ ଅଭିଯୋଗ
ଅଛି ଯେ : ତୁମକୁ ନେହୁର ହୋଇ
ପଦୁଟିଏ ଉଚ୍ଚାରିବ : ହେ ପ୍ରଭୁ,
ହାଇଚମଟର ଭଉଁରୀରୁ ବା
ଆଇଁଷିଣା ମାଟିର ହୃଦରୁ
ନେଇଯାଅ ଶୂନ୍ୟ ଗୋଲକକୁ ;
ବା କେଉଁ ସ୍ୱେତ ଶୋଷହୀନ
ଦିନର ଶେଷ ଦାନ, ଶେଷ ଦଂଶ, ଶେଷ ଲଜ୍ଜା
ବଳତାର ପ୍ରାର୍ଥିତ କୋଳକୁ ; ବା
କେଉଁ ଅହଂକାରୀ ଆଷାଢ଼ର ମେଘର ଘଲ୍‌ଟଣ
ସିଡ଼ିମାଣ ଧାଉଁଥିବା ମାଲ ଚୌକି
ରକ୍ତର ଚୂଡ଼ାକୁ ।। ହେ ପ୍ରଭୁ, କୌଣସି
ସମ୍ଭବ୍ୟ ଇଚ୍ଛାର ନିର୍ଦ୍ଦିଷ୍ଟ ଅର୍ଗଳ
ଅଛି ଯେ : ପଦୁଟିଏ ଉଚ୍ଚାରିବ
ଶୀଘ୍ରମୁଁରେ –
ଆତ୍ମଭୋଳା ଲଗ୍ନରେ, ବା ତୃଷ୍ଣାପୂ ଚକ୍ଷୁରେ ।।

ଯା'ର କିଛି ଦବାର ଥାଏ, କହିବାର ଥାଏ
ବା ନବାର ଥାଏ ତୁମଠୁଁ, ତୁମ ଓସ୍ତାଦ
ଖେଳର ବଚନକାରୁ ବା ରଂଗିନ୍ ଫୁଲର
ଦୁର୍ଗନ୍ଧ ବାସ୍ନାରୁ ବା ଉଜ୍ଜ୍ୱଳ ମଣିର ସ୍ପର୍ଶରୁ
ଏମିତି କିଛି ଓଜନଦାର, ଆଖିଦାଶ
ଭାଗ୍ୟର ଚଂପାଫୁଲ : ସେ ସିନା ଖଂଜଣିରେ

ବାଂଧିବ ତୁମକୁ ଭୁଲାଇବାର ଗୀତ,
ତୁମକୁ କୁହୁକ କରିବାର ପ୍ରସନ୍ନ-ମଂତ୍ର,
ତୁମକୁ ଉଜୁଆ କରିବାର ତାଂତ୍ରିକତା !

ସେମିତି କିଛି ମୋର ନା ଅଛି ଫଂଦି
ନା ଦୁରଭିସନ୍ଧି, ନା ଶାଂଠପଣିଆର
ବଜବାଣୀ ଯେ : ତୁମ ଜନ୍ମ ଦିନର ସ୍ମୃତିରେ
ଉଜାଇ ଦେବ ନହସି ପଡ଼ିଥିବା ଅଂଧାର,
ତୁମ ଯୌବନର ଦୁର୍ଦାଂତ ପାଗଳାମିରେ
ହଜାଇ ଦେବ କୌଣସି ଅଭିଯୋଗର
ସାମନ୍ୟତମ ରଣ କୁହୁଡ଼ିର କୁହୁ,
ବା ଜହ୍ନି ଫୁଲର ସୋହାଗ ॥

କିଂତୁ, ଗୋଟାଏ ଶୁଭବନ୍ଧ ମୂହୂର୍ତ୍ତରେ
ଯେବେ ତୁମକୁ ଭେଟିବି, ଜାଣିବ
କି ସାଂଘାତିକ, କି ନିଷ୍ପାପ ଗ୍ରୁପ୍ଥାନ୍ତରେ
ଅଭିଯୋଗ ଥିଲା ଗୋଟାଏ
ନିକଟତମ, ଅଥଚ ଦୂରବର୍ତ୍ତୀ
ଆତ୍ମୀୟ ସତ୍ୟର, ଜଦ୍‌ଖୋର ଉତ୍କଂଠା
ବା ଅଦୃଶ୍ୟ ଢ଼ମିର ଫୁଲର ॥

( ୧୯୭୫ ନଭେମ୍ବର 'ନବରବି' ରେ ପ୍ରକାଶିତ )

# ଅଥଚ

ସବୁ ହାଡ଼ୁଆ ସତ୍ୟର ଘାଲ
ମଲ୍ଲ ସାପ ଭଳି ଗଡ଼ୁଚି
ନା ଅଚେତ ଆଲୁଅରେ
ଝିଟିକୁଚି ଏମିତି, ଲୋକ ଦେଖାଣିଆ
ଖୁସିର ଚଉତରାରେ ଯେ : କିନ୍ତୁ
ଜାଣି ହଉ ନାହିଁ ଗାଧୁଆ ଦିନର
କାହ୍ନା କମିତି ଚହଟେ, କିମିତି
ମହା ମହା ଦାଂଭୁଆ ପୁରୁଷଂକ
ଆଂଟପଣ ଖସିଯାଏ
ଅନିର୍ଦ୍ଦିଷ୍ଟ ଅପ୍ରତ୍ୟାଶିତ ମୁହୂର୍ତ୍ତରେ :
ଘରବୁଡ଼ା, ମାସ୍ୟାଙ୍କ ସ୍ୱପ୍ନର
ହୁଂକାରରେ ॥

ନିଜକୁ ପ୍ରବୋଧିବା ଭଳି ଧିକ୍କାର
ଠାରୁ ଅଧିକ କ'ଣ ବିଡ଼ଂବନା,
କଳଂକା ଜୁଇର ଅଭିଶାପ
ଅଛି ଯେ : ଅନ୍ୟକୁ ଧିକ୍କାରିବ
ବା ମଥା ନୁଆଁଇ କୁର୍ଣିଶ୍ କରିବ
ମଣିଷ ପଣିଆର ଧୂ ଧୂ ଧୂସର
ପାଂଡୁଲିପିର ନିର୍ଜନତା,
ସମାଧିସ୍ଥ ସତ୍ତ୍ୱର କବନ୍ଧରେ ॥

ଅଥଚ ସାମାନ୍ୟ ହସର ଝଂକଣି
ବଜାଇବା କି ନ୍ୟାଯ୍ୟ, କି

ନ୍ୟାପ୍ଥାଧିପର କୁଂଙ୍କାଳ ଧରି
ମଥା ଝୁଂଗାଉବା କୁ ଧୂର୍ତ୍ତତାର
ଡମର୍ଷପଣ ଯେ : ସବୁ ହାଡ଼ୁଆ ସତ୍ୟର
ପାଲ ଗଡ଼ୁଚି ତ ଗଡ଼ୁଚି ;
ତରଳ ପାଳଚ ପ୍ରଶ୍ବାସ୍ତୁର ଅଂଧାର :

କାଳ ତ କାଳ, ମହାକାଳର
କପାଳରେ ଲେଖା ନାହିଁ
କୌଣସି ନିର୍ଦ୍ଦିଷ୍ଟ ଶବ୍ଦର ଅର୍ଥ
ବା ସଙ୍କ୍ଷା । ସବୁ ବଦଳି ଯାଏ,
ସବୁ ମୂର୍ଦ୍ଦାର ଭଳି ସଡ଼ିଯାଏ, ସବୁ
ଅପକୁଷ୍ଠା ଭଳି ଉଦ୍ଭିନ୍ନତାର ଛତ୍ର
ଫୁଟାଏ ଯେ ଅର୍ଥ ଖୋଜେ ଶବ୍ଦକୁ,
ଶବ୍ଦ ଲୋଡ଼େ ଅନର୍ଥକୁ, ଅନର୍ଥର
ତକା ଆଖି ଜୁଂଡୁଥାଏ ଜୀବନକୁ,
ଜୀବନ ସଂତରିଯାଏ ରକ୍ତର ତମକୁ,
ଓ ରକ୍ତସବୁ ଗାଢ଼ ହେଇ, କଳା ହେଇ
ତକା ତକା ହୋଇ ପରି
ଚପଟଇ ଅସ୍ତବ୍ୟସ୍ତତାର ନିର୍ବିକଳ୍ପ
ସମାଧିକୁ ! ଅଥଚ

ମୁହୂର୍ତ୍ତର ହାତରୁ ମୁହୂର୍ତ୍ତ, ମୁହୂର୍ତ୍ତର
ଓଠରୁ ମୁହୂର୍ତ୍ତ, ମୁହୂର୍ତ୍ତର ଆଂଠୁଗଂଠିରୁ
ମୁହୂର୍ତ୍ତ ଡେଇଁପଡ଼େ ଚପଳ ଖୋଜକୁ
ଖୋଜର ଜଖମକୁ ; କଅଁଳ
ଘାସର ନିହଡ଼ିଭଂଗା
ଦୁର୍ଦ୍ଦାଂତ ପଣିଆକୁ ।। ଅଥଚ :

( ୧୯୭୫ ନଭେମ୍ବର 'ନବରବି' ରେ ପ୍ରକାଶିତ )

ଅଂତତଃ ନିସ୍ତୁପ ।। ୪୩

# ଭୁଲ

ଭୁଲର ତ ନାଁ ନାହିଁ, ଅନାମ ଝପଡ଼ା
ଖୋଲି ଦିଏ ସାନ ବଡ଼ ପାହାଡ଼ର
ବନ୍ଦଥିବା ବାକ୍ସ ଏବଂ ସିଂଦୁକ, ପେଟରା ।
ଅନାବନା ବର୍ଷିପୁସୀ ପାପର ମେଖଳା ପିଂଧା
ଧାଉଁଥିବା ମୁହୂର୍ତ୍ତର ଠାଣି । ନମିଷେକ
ସ୍ଥିର ହୁଏ ଶାମୁକାର ଢକ ଢକ
ଲୁହ କିଂବା ଲହୁର ଆଷାଢ଼ ! ନନିଷେକ
ଧୋଇଦିଏ ଶ୍ରାବଣର ଆତୁରତା, ମୃତ ପ୍ରେମିକାର
ଅସ୍ପୃଷ୍ଟ ଚେଚେହର ଏବଂ ସିଂଦୂରିତ ଦୁଃଖର କଂକାଳ !

ଭୁଲର ତ ନାମ ନାହିଁ । ନାମହୀନ ଅନ୍ଧାରର ଗଳି
ମୁଂଡ଼ରେ ଏକାକୀ ଠିଆ । ଚଉପାଶେ ସଂଦେହ ଓ
ଦରପୋଡ଼ା ବସଂତର ଶବ୍ର ଧୂଆଁ ଜାଲ ।
ଭୁଲର କି ନାମ ନାହିଁ । ଅନ୍ୟ ନାମ
ବଇଶାଖୀ ଝଡ ଏବଂ ଶୋକର କଂକାଳ ! !

ଜାରଜ ସ୍ୱପ୍ନଟେ ପରି ଘୂରି ବୁଲେ
ନାମହୀନ ଭୁଲ ଏବଂ ଉଚ୍ଛକତ ପରାସ୍ତ ମୁହୂର୍ତ୍ତ,
ଫାଂକା ଏକ ଛୁଟି ଦିନ ସମୃଦ୍ଧ ଇଚ୍ଛାରେ
ଯେଉଁପରି ହୁଏ ମୁକ୍ତ, ଖୋଜେ ନୂଆ ଜାଣିବାର ତତ୍ତ୍ୱ ।।

ଭୁଲର ତ ନାଁ ନାହିଁ । ସ୍ୱରସାମ୍ୟ ହୀନ ଏକ
ଚଗଳୁର ଉତ୍‌ଥାନ, ପତନ । ସାମାନ୍ୟ ଅସ୍ୱୈର କଂଥା,
ଯାର ନାମ ଭୁଲ ଏବଂ ଜୀବନର ଶୁଦ୍ଧ ଉଚ୍ଚାରଣ ।

କାଂଦ ନାହିଁ, ହସ ନାହିଁ, ନାହିଁ ତାର
ହ୍ଲଚଳତ ଦୁଃଖର ଆକାଶୀ ରୂପ,
ନାହିଁ ତାର ସ୍ଥିତି ଅବା ଗନ୍ତର ବାହୁନା,
ଭୁଲ ଏକ ନାମହୀନ, ଉଜବଣ୍ଣ ସ୍ମୃତି ଏବଂ
ତେଣାକଣ୍ଟା ପକ୍ଷୀର ଠିକଣା ।

ଭୁଲ ଏକ ଚଇସ୍ଥାସ୍ୱୀ ବଂଦୋବସ୍ତ
ଧରି ଟାଣେ କୁହୁଡ଼ିଆ ଉଲ୍ଲାସର ସରହଦ
ସହରର ରସଦ ଆସରେ ।
ଭୁଲର ତ ନାଁ ନାହିଁ । ନାମହୀନ ଦ୍ରୁମ ପରି
ନିର୍ବିକାର, ଖରା ଏବଂ ବର୍ଷାର ମାଡ଼ରେ ।
ଭୁଲ ଏକ ପଳାତକ ସମସ୍ତର ସାଦା ରବଦାର
ଗୁଡ଼ରେ କେତୋଟି ଶବ୍ଦ, ଅର୍ଥମୟ
ଧ୍ୱନର ଖଂଜଣି ।
ଭୁଲ ଏକ ନାମହୀନ ଛେଳଂଡ ପିଲାର -
ଡବ ଡବ ଆଖି ଏବଂ ଭୁଆଁ ବୁଲ ବସ୍ତା, ଚୌମୁହାଣି ।

( 'ପଳଫୁଲ' ୧ମ ବର୍ଷ ୧ମ ସଂଖ୍ୟାରେ ପ୍ରକାଶିତ )

# ବୈଶିକ

ପବନର ସ୍ୱର ଅଛି
ସ୍ୱର ବଗୀଚର ।।

ସ୍ୱର ଅଛି ଅସଲଗ୍ନ
ଇଚ୍ଛା ଏବଂ ସ୍ୱପ୍ନମାନଂକର ।
ସ୍ୱର ଅଛି ମ୍ଳାନ ଏବଂ
ଅଧା ଛୁଇ ଅଧା ଆଲୁଅର ।।

ସ୍ପନ୍ଦନର ସ୍ୱର ଅଛି ।
ଯୌଥ ଚେତନାର ।।

ସ୍ୱର ଅଛି କ୍ଷିପ୍ର ଏବଂ
ହିଂସ୍ର ପ୍ରାଚୁର୍ଯ୍ୟର ।
ସ୍ୱର ନାହିଁ ସ୍ତବ୍ଧ ରାତ୍ରି,
ବହଳ ଅଂଧାର ??

ପଶୁଂକର ସ୍ୱର ଅଛି ?
ନଦୀ ମାନଂକର ।
ଫୁଲଂକର ରକ୍ତ ପଶ
ବୈଶିକ ଦୁଆର ।।

ସ୍ୱର ନାହିଁ ସମସ୍ୱର ।
ନାହିଁ ମୃତ ସ୍ମୃତିମାନଙ୍କର !
ସ୍ୱର ଅଛି ନୃତ୍ୟବନ୍ତ,
ପଞ୍ଚିପୁସୀ, ଦୁଃଖେଦ ଆତ୍ମାର ॥

ସ୍ୱର ନାହିଁ ପ୍ରତ୍ୟାଶାର ।
ନାହିଁ ବୁଢା ଶୂନ୍ୟ କୋକରର !
ସ୍ୱର ଅଛି ପୁଣ୍ୟବନ୍ତ
ସଂସ୍ରଣା ଓ ଚକାଡ଼ୋଳା
ବ୍ରହ୍ମାଂଡ ଭିତର ॥

ସ୍ୱର ଅଛି ସ୍ୱଦାଶୀର ।
କୌତୂହଳୀ, ଦାଢୁଆ ସତ୍ୟର ॥
ସ୍ୱର ଅଛି, ନାହିଁ ଏବଂ ଅଛି
ମଧ୍ୟେ ନର୍ଦ୍ଧଳ ସ୍ୱାସର ॥

(୧୯୭୩ ପୂଜାସଂଖ୍ୟା 'ସମାବେଶ' ରେ ପ୍ରକାଶିତ ।)

## ଦେହାତୀଙ୍କ

ରେ ବାଂଧବୀ, ପଦ୍ମ ପୋଖରୀକୁ ଦେଖ :
ବାଟ ବଣା ପବନର ହାତ ବାଜ
ଚହଲୁଛି ପାଣି, ନା ତୁମ ମୁହଁ, ନା
ମଲ୍ଲ ସୂର୍ଯ୍ୟର ନିଆ କୁଂଡ
ଅସଯତ ଦୃଷ୍ଟିର ଧାରରେ ।।

ରେ ବାଂଧବୀ, ବୁଢ଼ା ଶରତକୁ ଦେଖ :
ଜହ୍ନର ଉବ୍‌କା ସ୍ନେହର କ୍ଷୀର
ଝରୁଛି ପଡ଼ୁଛି ଘାସରେ,
ଚଟାଣରେ, ହାତୀ ଦାଂତର ଡ଼ଗାପ୍ୟ
ସିଂହାସନରେ ।।

ଖେଳ ଯାଉଛି ଅଥୟୁ ଆସ୍‌କତର ଟିକ୍‌କଣତା
ତୁମ ଆଖିରେ, ଚିକୁରରେ ନା
ପଣଂକର ଝିଲ୍‌ମିଲ୍ ମେଦୁଆ ଶାଢ଼ୀରେ ।।

ରେ ବାଂଧବୀ, କି ଆଶ୍ଚର୍ଯ୍ୟ ଯେ :
ତୁମେ ତେଇଁ ପଡୁଚ
ହଠ ଚମଟର ଗହ୍ୱର ଖାତକୁ
ଓ ମୋତେ ଟେକ ଦଉଚ
ପରମ ଆହ୍ଲାଦର ଘଜ ଉଦ୍ୟାନ,
ନା ମରଣର ଚିର ତୃପ୍ତ ଲଜୁରୀ ପ୍ରଶ୍ନଟି ଏ ¡

ରେ ବାଂଧବୀ, କି ଉଲ୍‌କା
କି ଫଜଫଜିଆ ଫୁର୍ତ୍ତିର ଗଦ୍ଧଣାରେ
ପୋଡି ପଡୁଚ ନର୍କର ନର୍ଜନତା !

( ୧୯୭୫ ' ନବରବି ' ଜାନୁୟାରୀ ସଂଖ୍ୟା ରେ ପ୍ରକାଶିତ )

# ଆଧାର

ସଂଜର ନୂଆଣିଆ ଆକାଶ,
ରଂଗ  ତୂଳୀର ଜହ୍ନିଫୁଲିଆ ସ୍ୱପ୍ନ
ଫେଂଟି ହେଉଛି ମୋ ସତ୍ତାର ମୁହଁରେ,
ମୋ ସ୍ଫୂର୍ତ୍ତିତା, ମୋ ପୂର୍ତ୍ତିତା, ମୋ
ଅପୂର୍ତ୍ତିତାର ପ୍ରତିମାରେ ଦେହରେ,
ଚଂପାଫୁଲିଆ ହୃଦୟର ସ୍ତବ୍ଧ ଗୋଲକରେ!

—ଏକ—

ଅଜସ୍ର ବର୍ଷାର  ଧାର ହଜିଯାଏ
ଯେଉଁ ସମୟରେ
ଓଲଟ ବ୍ୟୋମର ତଳା ଜଣାଣର
ଦିବ୍ୟ ସିଂହଦ୍ୱାରେ,
ଅଂଚଳ ମୋ ଅଷ୍ଟଂଦ୍ରୀପ୍ସୁ ପୁରୁଷର
ଚକା ଆଖି
ଯୋଖିଯାଏ କାର ନେଳୀ ସମୁଦ୍ରର
ଭସାଣିଆ ଦୃଷ୍ଟିର ଖାଲରେ !
ବଡ଼ ଦୁଃଖ, ବଡ଼ ଶ୍ରାନ୍ତ ଯେଉଁ ରାଜ୍ୟ,

ଯେଉଁ ସାମ୍ରାଜ୍ୟର :
ଅର୍ବୁଦ ଅର୍ବୁଦ ପ୍ରଶ୍ନ ମାଂସ୍ପା ରଚେ

ଜଉରଂକ ଭଗ୍ନ ଆଟଗାଚର,
ଜଉରର ଛିନ୍ନ ଭିନ୍ନ ଶଂକଟ ଗଳାରେ
ଯାହା ଆସେ; ସବୁ ମିଛ, ସବୁ ଲୀଳା—
ଅବଲୀଳା କ୍ରମେ ଅବାନ୍ତର ।

—ଦୁଇ—

ଯାହା କାଳ, ଯାହା ସ୍ତର ଯାହାବା ବିସ୍ତାର
ନାମକ ସରଳ ରେଖା
ଭାସମାନ ସେତୁର କଂକାଳ
ଉପରେ ନାଚଇ ଗଡ଼, ସାମ୍ରାଜ୍ୟର
ମୃତ ଦ୍ୱିପଦର । ଯେତେବେଳେ
ଅଜସ୍ର ବର୍ଷାର ଧାରେ
ବହିଯାଏ
ଓଲଟ ଘୂମର ଜଳା ଭଣାଣରୁ
ମୁକ୍ତ ସିଂହଦ୍ୱାର ।

("ସହକାର" ୧୯୭୫ ନଭେମ୍ବର ସଂଖ୍ୟାରେ ପ୍ରକାଶିତ)

# ଆଲିଂଗନ

ପୁରୁଣା ଚିହ୍ନିତ ଆକାଶକୁ
କେମିତି ଅଚିହ୍ନା ନବାଳ
କଳ୍ପବରେ ବାବଦୂକ, କେମିତି
ସ୍ପନ୍ଦନ ସଙ୍ଗ, ମମତାଭରା
ପୃଥିବୀକୁ ସାତପର କରିବ
ରେ ଦୁର୍ଦ୍ଦିନ, ମାଳ, ଆପୁଷ୍ପଣ ମୁହୂର୍ତ୍ତ ?
ଯାହା ଉତ୍କୂଳ ସମୁଦ୍ରର ଗ୍ରୁଡରେ
ଫର୍ହରୁଥିବା ବୁଡ଼ଯାଉଥିବା, ହସୁଥିବା
ଲଲ ମାଛର କାତରେ
ଚକ୍ ଚିକ୍, ବ୍ୟାକୁଳ ମୁକ୍ତିର ପ୍ରତୀକ୍ଷା !!

ସବୁ ଷପ୍ନ ଷତର ଉଜାଣି ଜାହାଜ
ସମୟର ସାହାଗ ଟପୁ ଟପୁ
କ'ଣ ଅଟକି ଯିବ ସାତତାଳ ପଂକ
ଏବଂ ପାହାଡ଼ ପର ଜମାଟ ଚଂଦନରେ ?
ସବୁ ବର୍ଷା ଋତୁର ବତୁରା ଆଖି ପଛାରେ
କ'ଣ ଲଟକି ଯିବ ବଜୁଳି ଫୁଲର
ଚମକଭରା ସମ୍ବୋଧନ !
ବା ଗେଲବସରର ରଂଗିନ୍ ଦିଗ୍‌ବଳୟକୁ
ଚୁମା ଟିଏ ଦେଇ ଭୁଲାଇ ପଡ଼ିବ
କେଉଁଠି ଉଡ଼ନ୍ତ ଚଢ଼େଇର
ଆସନ୍ନ ମୃତ୍ୟୁର ଶୋକ !

ଯାହା ସ୍ପଷ୍ଟ, ଏବଂ ଦୃଢ଼ ବା ଏକାଗ୍ର
ନର୍ଜନତା, ବା ଯାହା ଅନନ୍ୟ
ଶରତର ଶୁଭ୍ରତା ପରି ନବଜାତ ଆକର୍ଷଣ,
ହସ କାଂଦର ବର୍ଣ୍ଣିଳ ପାଚିଲା ଧାନ କ୍ଷେତ
ତାକୁ ଅସରା ଅସରା ଥଂଡା ପବନର କୋଳରେ
କେମିତି ଶୁଆଇ ହବ
ଦହଗ ନାଆର ଅଠାଳିଆ ବନ୍ଧଣାରେ ?

ହେ ପାର୍ଥିବନର ସଙ୍ଗତ ଉଦ୍ୟାନ,
ତୁମକୁ କେମିତି ସାତପର କରିବ ?
ମାତ୍ର ଗୋଟିଏ ଛିନ୍ନ ମୂଳ ମୁହୂର୍ତ୍ତର
ଦୁର୍ବଳ ଅତ୍ୟାଗ୍ରର ।

( ପୂଜାସଙ୍ଖ୍ୟା 'ନବରବି' ୧୯୭୪ରେ ପ୍ରକାଶିତ )

# ଶ୍ରୂୟତାମ୍

ଜହ୍ନର ତ ଯାନ ଅଛି ।
ଲୋହିତ ହାତର ।
ରୁଣୁଝୁଣୁ ଶବ୍ଦ
ପ୍ରମତ୍ତ ଶୃଙ୍ଗାର ॥

ପବନର ଯାନ ଅଛି ।
ନିଶ୍ଚଳ ରଥର ।
ଯାନ ନାହିଁ ବୃତ୍ତାୟିତ
ଯାତ୍ରା ଏବଂ ପୁନର୍ଗମନର ॥

ମଧ୍ୟାହ୍ନର ଯାନ ପରି
ଉତ୍କଂଠ ଭଉଁରୀ ।
ବିକ୍ଷିପ୍ତ ପବର ସଙ୍ଗ,
କଜ୍ଜଳରେ ନାଳ ॥

ସ୍ଥିରତାର ଯାନ ନାହିଁ,
ମୂର୍ତ୍ତି ମାଟିଆର ।
ସମୟର ଯାନ ନାହିଁ,
ଝାପ୍‌ସା କେଉଁ ଶବ-ପ୍ରତିମାର ।

ଯାନ ଅଛି କ୍ରୁଦ୍ଧ ସାପ,
କ୍ରୂର ବାମନର ।
ଯାନ ନାହିଁ ଅଣାୟତ୍ତ
ଭାଗ୍ୟ ଏବଂ ଭାଗ୍ୟବନ୍ତୀ ମତ୍ସ୍ୟଗନ୍ଧା
ନାରୀମାନଙ୍କର ॥

ଯାନ ଅଛି ସତ୍ୟବନ୍ତ
ସ୍ଫୁଲିଂଗର । ତୃଷିତ ଷୋଭର ।
ଯାଂଥର ଷ ଯାନ ଅଛି ।
ଅଚଂଚଳ ନିର୍ଗୁଣ ବ୍ରହ୍ମର ॥

( ୧୯୭୮ ବର୍ଷ ବିଷୁବ ସଂଖ୍ୟା ‘ସହକାର’ରେ ପ୍ରକାଶିତ )

## ପୂଜାଛୁଟି

( ୧ )

ପୃଥକ ପୃଥକ ଋତୁ
ବର୍ଷା ଓ ଶରତ : ଅଭିନ୍ନ ଇଚ୍ଛାର
ଗୋପନୀୟ ଯୋଗଫଳ । ଆଂବ
ବଗିଚାର ଟପଟାପ୍ କାଂଦ ଏବଂ
ଦାଂଡ ଚଉଁରର କଇଁଫୁଲ,
କଣେଇର ଫଲ୍ଗୁନ ବସଂତ !

ବରକୁଣୀ ପୂଜାଛୁଟି ! ଉଦ୍‌ବେଗ
ମୁହୂର୍ତ୍ତ ଏବଂ ଛାତିଲା ମେଘର
ବୃଥା ବୃଥା ଦୀର୍ଘଶ୍ୱାସ । କେତୋଟି ବଧୂଙ୍କ
ହସ ହସ ମୁହଁ, ଏବଂ
'ବାହୁଡ଼ା ବଜେ' ଦାସଭଇର ଦାସୀ ପିଂଢା,
ଲକ୍ଷ୍ମୀର ଭଂଡାର ।।

( ୨ )

ରଂଗ ଓ ବେରଂଗ ପୂଜାଛୁଟି ।
ଚୁଡ଼ି ଓ ସିଂଦୂରେ ଝଲମଲ ।
ଚୁଂବନର ଦାଗରେ ଉଜ୍ଜଳ
ଯୁବକଙ୍କ ଗାଲ ଓ କପାଳ ;

ବୃହସ୍ପତି ପ୍ରସନ୍ନ, ଓ ପୁନବ୍କନ୍ୟା
ସ୍ନେହଭାଜନର ଅତ୍ୟାଗ୍ରହରେ
ଅର୍ଥର ନ'ଅଂକ ; ପୂଜାଛୁଟି :

ଗରବିଣୀ ନର୍ତ୍ତକୀର ନଟୋଳ
ସ୍ତନ ଏବଂ କଟି ପରି ଦୃଷ୍ଟିକୁ ବନ୍ଧୁଳ ।
ତାର ଛଂଦ, ମୁଦ୍ରା ଏବଂ ସ୍ମିତ
ଗର୍ଭବତୀ ନାରୀ ପରି
ଚକ୍‌କଣ, ଅରମ୍ୟା ଏବଂ ଫୁଲେଇ, ସୁଂଦର ॥

( ୩ )

ପ୍ରତ୍ୟେକଂକ ସ୍ତ୍ରୀ ପାଇଁ ପୂଜାଛୁଟି
ଦେହ ପୂଜା ଅସ୍ତ୍ର । ଏବଂ
ପୁରୁଷଂକ ଅର୍ଥେ ଢିଆଁଆ
ବଂଠା କଂଠା ଅଂଶୀଦାର କ୍ଷେତର ଫସଲ୍ ।
ପୂଜାଛୁଟି ସହରର ଚୁଟି ଧରି
କେମଂତେ ଲୋଠାଏ
ଗାଁ : ପଚ ପଚ କାଦୁଅ ଓ
ସବୁଜ ଶାଢୀରେ ଢଂକା
ଚଂପାଢୋଗୀ ଅଳସ ପାଦର ॥

ପୂଜାଛୁଟି ନରୁତ୍ତର ।
ଫୁର୍ତ୍ତି ଏବଂ ଧୂର୍ତ୍ତ ସମସ୍ତର
କଳାପୋଛା । କ୍ଲବ ଏବଂ ସରାଇ ଖାନାର

ଚଡ଼ା ମେଜାଜ୍ ; ଟ୍ରାମ୍, ବସ୍
ଭିଡ ଠେଲିବାର ଝୁଂକ୍ ଏବଂ
ଫୋର୍ଥ ସୋ ଖେଳ ଖେଳିବାର !
ପୂଜାଛୁଟି ଚୁପ୍‌ଚୁପ୍
ସ୍ୱର୍ଗବାସ, ପୂତ୍ ନାମ ନର୍କରୁ ଉଦ୍ଧାର ।

ବର୍ଷା ଓ ଶରତର
ମଧ୍ୟାଂତର ପୂଜାଛୁଟି,
ସ୍ନେହଜ ଆକାଶ ।
କାଶତଂଣ୍ଡୀ ନଈ ନାଳ
କୃଷ୍ଣଚୂଡ଼ା ଲଜେ ଭରସାଂତ ॥

(ଆସନ୍ତାକାଲି '୧୯୭୪' ଜାନୁୟାରୀ ସଂଖ୍ୟାରେ ପ୍ରକାଶିତ)

# ନାଚ

ଖଗରେ ନାଚବା ଭୁଲ୍, ବର୍ଷାରେ ନାଚବା ! ନିଆଁରେ ଖେଳବା ଢୋଲ । ଖଡ୍ଗରେ ନାଚବା ! ରକ୍ତର ତୃଷାକୁ ଫେଣ୍ଟି ବିଷୂବର ପଣା ପରଶିବା ॥

ରକ୍ତ ଦିଅ । ରକ୍ତ ନିଅ । ଯଂତ୍ରଣାର ଫୁଲ ଶଯ୍ୟା ଯତ୍ନେ ପାତି ଦିଅ । ବର୍ତ୍ତମାନ ନଦୀ ସବୁ କୂଳ ଲଂଘି ମାଡ଼ି ଆସିବାର···ଓ ନିଆଁରେ ଖେଳବା ଢୋଲ···ନାଚବା ଖଗରେ ।

ନଚେତ୍ ଡେଇଁବା ଆସ ଦେହଘର ଦାଢ଼ୁଆ ନଶାରେ । ଗଂଜାମର କଂଧମେଳେ ମହର୍ଷିର ଟପ୍ ଟପ୍ ଲୁହର ନିଆଁରେ ! ଓ କେଉଁ ଏକ ଆତତାୟୀ—ଚକ୍ ଚକ୍—ଝଲୁଥିବା—ଛୁରୀର ହସରେ ॥

ଖଗରେ ନାଚବା ଭୁଲ । ବର୍ଷାରେ ନାଚବା ! ନିଆଁ, ଖଗ, ରକ୍ତ, ମଦ, ବନ୍ୟା, ଲୁହ ଓ ସବୁକଷ୍ଟ ଏମିତିକା ଭାବବାଦ୍ଧି ଶବ୍ଦର ବୃନ୍ଦରେ ନାଚ ନାଚ ନାଚ ଶିଖିଯିବ !

ଖଗରେ ନାଚବା ଭୁଲ ।
ନିଆଁରେ ନାଚବା ଭୁଲ ॥
ରକ୍ତରେ ନାଚବା ! ! !

( 'ଆକାଶ ଧାପ' ରେ ପ୍ରକାଶିତ )

## ମାନଚିତ୍ର : ମୁଁ ଓ ସମୟ

( ୧ )

ସବୁଠୁଁ ନିଷ୍ଠୁର କିଏ ?
ସମୟ ଓ ତାର ସହଚର ।
ସେ କି ଆସେ ପ୍ରତିଟି କାମରେ
ଛଦ୍ମ ବେଶେ । ନିତ୍ୟ, ଅଗୋଚରେ;
ସାନିଧ ମୋହର ଲେଢ଼େ
ରକ୍ତହୀନ , ସିକ୍ତ ବାଲୁଚରେ ।।

ଏମିତି ମୁହୂର୍ତ୍ତ ଆସେ ।
ଠିଆ ହୁଏ ନିଆଶ୍ରୀ ଅଧମ ଜନ
ପରି ମୋର ଗଡ଼ର ସାମ୍ନାରେ ।
ମୁଠାଏ କରୁଣା ମାଗେ
ଭାଷାହୀନ, ଥଂବିଳ ଦୃଷ୍ଟିରେ ।
ଧୂଳିଆ, ବିବସ୍ତ୍ର ଦେହ
ଢ଼ାଂକ ଥାଏ ଅବିବେକୀ
ବିମୂଢ଼ ହସରେ ।।

( ୨ )

ଲୁହୁଁ ଲୁହୁଁ ତୋଳି ନିଏ
କାହାକୁ ? ମୋ ଧୂର୍ତ୍ତ ଆବେଗକୁ ।
ଆବେଗକୁ ? ମୂଢ଼ ପଣିଆକୁ ।

ମୂଢ଼ତାକୁ, ନା ମୋର
ସ୍ତୁପୀକୃତ ଅସ୍ଥିରତା ଓ ଗ୍ଲାନିର ଯୁକ୍ତିକୁ ।
ଉଦ୍‌ବାହୁ ରାକ୍ଷସୀ ପରି
ଛୁଟିଗଲେ ଗହଳ ଅଂଧାରେ
ନିରଂଧ୍ର ସ୍ଥିରତା ଏବଂ ଆତୁର କାଁଦଣା ତାର
ବିଛୁଇଚି ଧୂସର ବାଳର ଶେଯ,
ଝୁଲ୍ଲଇଚି ବିଭତ୍ସ ହସର ଏକ
ଚକ୍ ଚକ୍ ଫାର୍ଶୀ । ଏବଂ ତାର
ହାତର କବ୍‌ଜାରୁ ଖସି
ପଡ଼ିଲି ମୁଁ ସମୁଦ୍ରର ମଝି ସଡ଼କରେ :

ରକ୍ତ ବାଂନ୍ତି, ମୂର୍ଚ୍ଛାଗତ ଭଂଗୀ
ଏବଂ ଅବିନ୍ୟସ୍ତ ରକ୍ତର ହାତରୁ
ମୋତେ କିଏ ତୋଳିନେଲା
ବିଶୁଦ୍ଧ ଆତ୍ମାର ଥାଳରେ !!

ସବୁଠୁ ନିଷ୍ଠୁର କିଏ ?
ସମସ୍ତ ଓ ତାର ସହଚର,
ମୁଁ କି ନିଜେ ନିରୁଦ୍‌ବିଗ୍ନ
ସମସ୍ତର ଧୂର୍ତ୍ତ, ବ୍ଲେପଦାର ॥

(‘ଲେଖା’ ୧୯୭୩ ଜାନୁୟାରୀ ସଂଖ୍ୟାରେ ପ୍ରକାଶିତ)

# ରବିବାର

ହଳଦିଆ ପତ୍ର ତଳେ
ଝୁଲୁଥିବା ଛ'ଟି ଫୁଲ୍‌ଙ୍କୁ
ଝାଡ଼ିଦିଏ ରବିବାର । ଓ
ଫୁର୍ତ୍ତି ଧରି ନରମ ଚମରେ
ଲେପି ଦିଏ କଞ୍ଚା ଧୋବ
କଞ୍ଚା ନାଲି ରଂଗର ଚହଟ ॥
ଅନମନା ଯୁବତୀର ଇତସ୍ତତଃ
ପୋଷାକକୁ ପିଂଧିନିଏ ରବିବାର
ଚା' ନଟୂନ, ଅର୍ଥହୀନ ଶ୍ୱାସର ହାତରେ ।
କୁହୁକମା ଦୁଃଖ ପରି
ମୋଖସିର ଭନ୍ଧ ଭୁଠେ
ଭରି ନିଏ ଶଂଖ ଶୁଭ୍ର କଳସୀ ଓ ଘାଟର ଆଉଡ଼ାକୁ,
ରବିବାର ଧୋଇ ଦିଏ
ଦରବୁଡ଼ୀ ଇଚ୍ଛାଙ୍କର
ଖସିବୁଡ଼ା ସଂଜର ଚମକୁ ॥
ରବିବାର, ସଦ୍ୟସ୍ନାତା ଷୋଡଶୀର
ବସ୍ତ୍ରାଭିଜା ଦେହ ପରି ଚହଟ, ଚକ୍‌କଣ,
ଭୁନଭାନ ଗାଁର ସହର ତଳି
ମଣିଷର ଜନ୍ମବ୍ରଫୁଲ୍‌ଙ୍କ ବେଳରେ ଝୁଲିବା ଭଂଗୀ,
ଚଳକାର ଆର୍ଶି ପରି ମୁହଁର ଗଢ଼ଣ ॥
ରବିବାର କୁହୁଳାଏ ଦୀର୍ଘଶ୍ୱାସ ।

ଝାଡ଼ହୁଏ ହଳଦିଆ ପତ୍ର ଏବଂ
ପିଇନଏ ଟିକନଖି ପାପର ସ୍ୱଦେଶୀ ମଦ
ନୂଶବ୍ଦ ଯଂତ୍ରଣାର ରଂଗିନ ପାତ୍ରରେ ।
ଓ ରହସ୍ୟରେ ଗଢ଼ିହୁଏ
ଏକ ସ୍ୱଚ୍ଛ ସକାଳର
ଝର ଝର ଖବର ହୃଦୟ ।
ରବିବାର, ଏକା ଏକା ଜଗିରହେ
ପୃଷ୍ଠିପତ୍ର, ଘରମଣା ମୂଷା ଏବଂ
ଅଧାଜଳା ଛତର ଖବର ॥

( 'ଆସଂତାକାଲି' ରେ ପ୍ରକାଶିତ )

# ସମୟ ପ୍ରତୀକ୍ଷମାଣ

ଆଜ କେତେ କାଳ ?
ମୁଁ ତ ଯିବ ଶୋକାଂକର କୋଟକଇରେ
ଘୋଡ଼ି ହୋଇ ହସର ଚଦର
ମଶାଣିକୁ ? ପୂର୍ବ ପୁରୁଷଂକ
ହାଡ଼ୁଆ ମୁହଁରେ ମୁହଁ ମିଳାଇବ,
ଆଜ କେତେ କାଳ ?
ସମୟର କବ୍ଜା ତଳେ
ମୁଁ ସାମାନ୍ୟ ଘାସର ପତର ॥

ମୁଁତ ଯିବ ମୋର ହାଡ଼ମାଂସ ଏବଂ
ରକ୍ତହୀନ ରକ୍ତର ନକ୍ସାର
ଏ ପାରରୁ, କେଉଁଠାକୁ ? ନୀଳ ସମୁଦ୍ରକୁ !
ଜାଣେନା ଉଡ଼ନ୍ତା ପକ୍ଷୀ,
ହାରବୁଲା ସମସ୍ତ ଓ ମୋ ତୃଷ୍ଣାସ୍ତ
ପୁରୁଷର ସ୍ଥିର ଦୃଷ୍ଟି, ଅଧୀର ପବନ ।
ମୁଁ ତ ଯିବ ଆଖିର ପଲକ ପରି
କେଉଁଠାକୁ ? ମା'ର ଗର୍ଭକୁ !
ଜାଣେ ନାହିଁ ଅଣାପୂତ
ଇଚ୍ଛା ଏବଂ ନିର୍ବିକାର ମନ ॥

ଆଜ୍ କେତେ କାଳ ?
ଯଂନ୍ତଣାର ଶ୍ଳଥ ବାହୁ
ବଂଧନ ଓ ସ୍ନେହର ରଜ୍ଜୁରେ
ଫାଶୀ ଦେଇ ଆପଣାକୁ
ଶୋକଂକର କୋକେଇରେ ବୁହାହେବ
ଜାଣେ ନାହିଁ । ପ୍ରତି ନିଃଶ୍ୱାସ
ଜଣାଯାଏ କ ଉତ୍ତାପଭରା
ଏକ ସତେଜ ସକାଳ,

ମୁଁ କ କଣ ରକ୍ତର ଅକ୍ଷର ଛଳେ
ମିଂକ ମିଂକ ଦେଖୁଥିବ
ମୋ ଉଜ୍ଜ୍ୱଳ ତଭଂକର
ଛଟପଟ, ଉଦ୍ବେଳ ଚକଳ ?

ଆଜ୍ କେତେ କାଳ ?
ମୁଁ ତ ଯିବ ଶୋକଂକର କୋକେଇରେ ॥

( ୧୯୭୩ ଜାନୁୟାରୀ 'ଇତ୍ୟାଦ' ରେ ପ୍ରକାଶିତ )

## ଛାୟାଲୋକ

ସାମାନ୍ୟ ଚଞ୍ଚଁ୍ୟକ୍ ଗ୍ଲଇ
ରକ୍ତାରକ୍ତ
ବେଗବାନ ଘୋଡ଼ା ପଣ
ମିଶିଯାଏ ଅରଣ୍ୟର
ବାହୁନା ଅଂଧାରେ ।
ସାମାନ୍ୟ ଦୁଃଖର ମେଘ
ଯେଉଁପରି ଶୃଂଗ ପରେ
ଶୃଂଗ ଲଂଘେ
ଅମାନିଆ କ୍ରୋଧୀ ପବନରେ ।
ସାମାନ୍ୟ ଛଫ୍ଁ୍ୟକ୍ ଗ୍ଲଇ
ଛୁଇଁଯାଏ
ସମୁନ୍ନତ ଶୃଂଗ ଏବଂ
ପଦ୍ମ ଝଙ୍କ ଶବ୍ଦର ଓଠକୁ ।
ବେଗବାନ, ବୀର୍ଯ୍ୟବାନ
ମୁହୂର୍ତ୍ତକ ଲଂଫ ଦିଏ
ସନ୍ତ୍ର ଏବଂ ଅବିଶ୍ୱାସ୍ୟ
ତେଉଂକର ଦ୍ୱିବସ୍ତ କୋଳକୁ !!

(୧୯୭୨ ଡ଼ିସେମ୍ବର 'ଆସଂତାକାଲ'ରେ ପ୍ରକାଶିତ)

## ସାର୍ଥକ

ହଠାତ୍ ବର୍ଷାର ଓଠ
ଯୋଡ଼ିଯାଏ
ଘନୀଭୂତ ଅସ୍ଥି ଏବଂ
ନଷ୍ଟରୁଗ୍ଣ ତ୍ୱଚ୍ଚାର ଓଠରେ ।
ଗ୍ଲୁପ୍ତାଚ୍ଛନ୍ନ, ବ୍ରଣଦୁଷ୍ଟ
ସ୍ୱପ୍ନଟିର ମୁହଁ ଭଳି
ଆପଣାର ଜ୍ୱାଳବ୍ରଣ
ନିଃସଂଗ ଆତ୍ମାରେ ।
ହଠାତ୍ ମାଟିର କ୍ଷେତ
ପରିପୂର୍ଣ୍ଣ । ଗ୍ରେଷ୍ଟ ଗ୍ରେଷ୍ଟ ଘାସର
କୋରସ୍, ଉଚ୍ଛୁଳାଏ
ଶୂନ୍ୟତା ଓ ଗ୍ଲୁପ୍ତାଘନ
ଚିତ୍ତର ସମୁଦ୍ର,
ଏକ ସ୍ଥିର ଅବାକ୍ ମୁହୂର୍ତ୍ତ ଆସେ
ନାଗୀତ୍ୱର ସ୍ପର୍ଶ ପରି
ପିଂଧି ନୂଆ ସ୍ପର୍ଧାର ମୁକୁଟ ।

(୧୯୭୨ ଡ଼ିସେମ୍ବର 'ଆସନ୍ନାକାଳ'ରେ ପ୍ରକାଶିତ)

# ମୁହଁ

ଫଟା ଆଇଁର ଇମେଜ୍
ନା
ଏକ ଥିର ହ୍ରଦର କାର୍ଟୁନ୍
ତମ ମୁହଁ ?

ନା ଏକ ଝାଳଭିଜିଥିବା
ଟାପୁଲର ରେଖାପରି
ଅସ୍ପଷ୍ଟ
ପୁରୁଣା ଘଂଟାର ଡାଏଲ ।।

ନା କୁହୁଡ଼ି ବୁଣା
ଶିଂଘାର ଜାଲ ପରି
ଛଂଦାଛଂଦ
ଏକ ଅକ୍ଟୋପାଶର
ଚିତ୍ର !!

( ୨ )

ଇତିହାସର ବେଖାଭିର
ଟେଟେଢେଇ
ମୁକୁଟିଆ ସମୟର ଗୋଡ଼କୁ
କେମିତି ସ୍ଥୂର

ଦେଖ ।
ଓ ତମ ଭୁଲ୍ ମାନଂକର ଡେଞ୍ଚି ।
ହସର ଉଜ୍ଜଳ ଭୁଲାକୁ
ଗୋଠାଇ ନେଉଚ
ଦୁଃଖର ଜଂଗଲ

ତମ ହସ୍ୱଇଥିବା ସାମ୍ରାଜ୍ୟ
ଓ ଛନ୍ଦପତ୍ତର ଅଭିମାନ
ଦୁଇଟି ଫୁଲର
କେଶରରେ
ଝୁଲୁଚ ତ ଝୁଲୁଚ !
ତମ ମୁହଁର ନଂବା ନାକକୁ
ପୋଛୁ ନେଇଚ
ଇଚ୍ଛା
ଗନ୍ଧର ଖଂଡା
ନା
କୁଂଆ ଛୁଆର ଦାତ ॥

( 'ସ୍ୱର' ରେ ପ୍ରକାଶିତ )

# ନୀଳକଂଠ

ବିଶ୍ୱାସର ଗମ୍ଭୀରତାରେ
ପ୍ରମତ୍ତ ଏକ ପଶୁ !
ନାଚୁଛି :
ସ୍ମୃତିର ମଶାଣିରେ ।

ସ୍ପନ୍ଦନ ପୃଥ୍ୱୀର
କୌପୀନ ପିଂଧି
ମୁଁଣ୍ଡର ବେଢ଼ା ପରିକ୍ରମା କରେ
ଏକ ପଶୁ !
ଗ୍ଲାନିର ଆହ୍ଲାଦରେ ॥

ଏକ ନିର୍ବିକାର ଦୃଷ୍ଟିର
ଗୋଲକରେ
ବିହାର କରେ ଏକ ପଶୁ !
ଯୋଗାରୂଢ଼
ଆତ୍ମ-ଚେତନାରେ ॥
ମୃତ୍ୟୁର ଡ଼ଂବରୁ ଧରି
ନାଚେ, କାଂଦେ, ହସେ
ଏକ ପଶୁ !
ନିଶାର୍ଦ୍ଧରେ,
ସର୍ପର ଶିଖାରେ ॥

( ‘ଅନୁପମା’ ରେ ପ୍ରକାଶିତ )

# ଦୁଃଖ

ନିଷ୍ଠୁର ଗବାକ୍ଷ ପଥ
କେଇ ଥାଅ : ତେବେ ଶୁଣ!
ମୋ ବନା ନଈ, ସମୁଦ୍ର ଓ ଆକାଶ
ଚଲ୍ ଚଲ ମଛୀ ଶାମୁକା ଓ
ପଂଖା ପଂଖା ଦୂରଦେଶୀ ମେଘ ।।

ନିଷ୍ଠ୍ର ଗବାକ୍ଷ ପଥ
କେଇ ଥାଅ : ତେବେ ଶୁଣ,
ଧାନ କ୍ଷେତ, ଝାଉଁବଣ ଏବଂ ନିର୍ଜନ ମୁହୂର୍ତ୍ତ
ମୋ ବନା ଦମ୍କା ପବନ, ଓ
ନଂବ ନଂବ ଗ୍ରୁଇର ଲୋମଶ ହାତ ।।

ନିଷ୍ଠୁର ଗବାକ୍ଷ ପଥ
କେଇ ଥାଅ : ତେବେ ଶୁଣ,
ମୋ ବନା ଛଳ ଛଳ ଆଖି, ଜଂଗଲର ଫୁଲ
ଅର୍ଥହୀନ ସ୍ୱପ୍ନ ଏବଂ ସ୍ୱପ୍ନହୀନ
ସୁଂଦର ଜୀବନ !!

ନିଷ୍ଠୁର ଗଗଣ ପଦ
କେଇ ଥାଅ : ତେବେ ଶୁଣ,
ମୋ ବନା ଛାଜାରକୁ, ନଂଡ଼ା ଗଛ,
ବାରହାତ ବେଣୀ, ଗାଈ ଜଗୁଆଳ—
କୁଲଖିଆ ନଈ, କ୍ଷୁର ଦାଢ଼ ॥

ନିଷ୍ଠୁର ଗଗଣ ପଦ
କେଇ ଥାଅ : ତେବେ ଶୁଣ,
ସ୍ମୃତ, ପ୍ରୀତ, ଓ ବର୍ଷାର ବରତ,
ଅଥବା
ଟଭକ୍ତ ସ୍ନେହର ସବୁଜ ପୃଥ୍ୱୀ
ମୋ ବନା : ଅରଣ୍ୟର ଦୁଃଖ, ମୃଗୁଣୀର ସ୍ମୃତି ॥

( 'ଆସଂତାକାଲି' ରେ ପ୍ରକାଶିତ )

ଅଂତତଃ ନିଷ୍ଠୁର । ୭୧

# ଇଚ୍ଛାମତ

ପାଣି ଚହଲୁଛି ତ ଚହଲୁଛି !
ପବନର ଅଦୃଶ୍ୟ ହାତରେ
କ'ଣ ଥିର ହେବ
ତାର ଅଧୀରତାର କୁହୁ ?

ଅତଡ଼ା ଖସୁଛି ତ ଖସୁଛି !'
ଧସା ବାଲିର ଚେର
କ'ଣ ଭିଡ଼ି ଧରିବ
ତାର ଅଁ କରିଥିବା
ଶୂନ୍ୟତାର ଡାଳ ?

ସୁଅ ଛୁଟୁଛି ତ ଛୁଟୁଛି !
ବକଟେ ପିଲାର
ଖିଆଲି ଗୋଡ଼ର ଓରରେ
କ'ଣ ଲିଖି ପାରିବ ?
ତାର ଅକାତକାତ ବେଗର
ଡାଳଚକ୍ଷୁ ପ୍ରମାଣ ଦୁଃଖ !

(' ଆର୍ଯ୍ୟାବର୍ତ୍ତ '-୧ମ ବର୍ଷ ୧ମ ସଂଖ୍ୟାରେ ପ୍ରକାଶିତ )

ସଂଚିତଃ ନଷ୍ଟ ପ୍ର । ୭୨

## ବସ୍ତୁସ୍ଥ

ବୁଢାର ବିଶ୍ୱାସ ନାହିଁ
ବୁଢ଼ୀ ସମୟର କୋଟରସ୍ଥ ଆଖିକୁ ।
ଟୋକାର ବିଶ୍ୱାସ ନାହିଁ
ଭଗ୍ନ ନକ୍ଷତ୍ରର ଡ଼ିଂକଆ କଂଧିରକୁ ।
ଓ ବଢ଼ିଲା ଝିଅ କି ବୁଝେ
ଶୁଖିଲା ନକ୍ଷତ୍ରର ଟେଡ଼ା
ଶ୍ୱାସର ଶବ୍ଦକୁ ?

ପିଲାମାନେ ବା କି ବୁଝନ୍ତି ?
ଚୂପ୍‌ଚୂପ୍‌ ବସିବାର ବସ୍ତୁସ୍ଥ ପୃଷ୍ଠାକୁ
ଏବଂ ଦାୟିତ୍ୱସମ୍ପନ୍ନ ଲୋକେ
ଜାଣନ୍ତି ନ
ଦାୟିତ୍ୱର ମାନେ ଫାଙ୍କିଦବା
ଗଳଦ୍‌ଘର୍ମ, ଅଳସ ଇଚ୍ଛାକୁ ।

କିଏ ବା ବୁଝଇ କ'ଣ ?
ବୁଝିବାଠୁଁ ନ ବୁଝିବା
ଢେର୍ ଭଲ । ଏଇ ଦେଖ ;
ବୁଢା କାପ ଛଆରୁଚି
ଛା ପାରିଲା ପୁଅଝିଅ,
ନାତୁଣୀ ବୋହୂଙ୍କୁ ।

('ଆର୍ଯ୍ୟାବର୍ତ୍ତ' ୧ମ ବର୍ଷ ୧ମ ସଂଖ୍ୟାରେ ପ୍ରକାଶିତ)

# ମ୍ଲେଚ୍ଛ

ଅଂକୁରିତ, ଦୂରସ୍ଥ ରକ୍ତଂକୁ
ପଗୃର, ମୃତ୍ୟୁଭଳ ଆତ୍ମୀୟ
ସ୍ନେହର ଚହଟ ଚଂପା
କେ ଫୁଟାଇପାରେ ?
ଫୁଟାଏ ତୁମ କ୍ଲୀବ ଖିନ୍ନତା,
ନା ପଂଗୁ ଅହଂକାର !
ନକଟସ୍ଥ ଫୁର୍ତ୍ତି ନା

ଅଗ୍ନାଅଗ୍ନି ଭ୍ରାଂତିର ହଳାହଳ,
ନା ତୁମ ବଂଶଚ ବିଶ୍ୱାସର
ଝାପ୍‌ସା ବସୁଂଧରା ॥
ରେ ପୂର୍ବପୂର ଉଦ୍‌ଭିନ୍ନ,
ସ୍ୱପ୍ନିଳ ଇଚ୍ଛାର ଗ୍ରଂଥି !
ରେ ଝଲମଲ ଖବର
ଚୁପ୍‌ଚୁପ୍‌ ସଂଗୁପ୍ତ ଗୁମାନ,
କେଉଉର ଦେବ :
ଆତ୍ମସ୍ଥ ହେବାର ଗ୍ଲାନକୁ ?
କେ ଯୋଖି ଦେବ
ବୃଂତଚ୍ୟୁତ ଶ୍ରଦ୍ଧାର ଫୁଲଂକୁ

ନଜ ନଜ ସତ୍ତାର ଡାଳରେ ?
ମୃତ୍ୟୁ ଭଳ ଆତ୍ମୀୟ ବା କଏ ଅଛୁ ? ?
ନାନାବାପ୍ପା ଗୀତର ତାଳରେ ॥

ଦୂରସ୍ଥ ରକ୍ତ ଓ ନକଟସ୍ଥ ଫୁର୍ତ୍ତି :
କଏ କହବ ଯେ :
ତୁମେ ଏକକ ଗ୍ଲାନର ଅହଂକାର,
ନା ଜଳଂତା ନଆଁର ଅଂଗାର ?

('ରୂପାଂତର' ୧୯୭୪, ୧ମ ବର୍ଷ, ୧ମ ସଂଖ୍ୟାରେ ପ୍ରକାଶିତ)

# ସନ୍ଦେହ

ହାତ ବଢ଼ାଇଲେ ଆକାଶ
ଡେଇଁ ପଡ଼ିବ ଫକ୍ କରି
ମାଟିର ଓଠକୁ,
ଗୋଡ଼ ବୁଡ଼ାଇଲେ ସମୁଦ୍ର
ଉଡ଼ିନେବ ଢେଉର ମଧ୍ୟକୁ;
ଓ ଗ୍ରୀଷ୍ମ ପାଉଲେ ହୁତାଶ
ଚରିଯିବ ରକ୍ତ ଓ ମାଂସକୁ !

ତେଣୁ ଏକ ନିଷ୍ଫଳ ମୁହୂର୍ତ୍ତ ପରି
ଅବାକ୍ ବିସ୍ମୟ
ଚଉଦିଗ ଘେରିଯାଏ
ସଂଜ ଏବଂ ସକାଳର ଗ୍ଲାଇ,
ତେଣୁ ମୋର ହାତ ଗୋଡ଼
ଏକାଭୂତ ହୋଇଯାଏ
ମୁହୂର୍ତ୍ତର ଦୀର୍ଘଶ୍ୱାସ, ଶବ୍ଦହୀନ ନଈ ।

ବିସ୍ମିତ ମେଘର ଆଖି
ଝଟକୁଚି, ଶୋକର ଗୃହିଣୀ
ପିଂଧି, ନୂଆ କୂଳବୋହୂ
ମାଜୁଚି ତା’ ଗୁପ୍ତ ହସ ନିଜସ୍ୱ ଇଚ୍ଛାରେ ।
ତେଣୁ ସବୁ ଦୁଃଖହୀନ ସତ୍ତ୍ୱର ସାମର୍ଥ୍ୟ
ଭିତରେ ଲହଡ଼ି ଭାଂଗେ
ମାଟି ଏବଂ ଆକାଶର ରିକ୍ତ,
ପେଂଥା ପେଂଥା ଫୁଲ
କିଂବା ଅନିର୍ଦ୍ଦିଷ୍ଟ ଶବ୍ଦର ଡାକରେ !

(୨୫ଶ ବର୍ଷ ୯ମ ସଂଖ୍ୟା ‘ଝଂକାର’ରେ ପ୍ରକାଶିତ)

# ଉନ୍ମୋଚନ

ବିଦାରି ଦିଅ, ଚିରି ଦିଅ,
ଛିନ୍‌ଭିନ୍ କରିଦିଅ ବୃଥା ସୂର୍ଯ୍ୟଙ୍କୁ,
ଓ ତା'ର ଗଳିତ ଚମ ଏବଂ ରକ୍ତରେ
ଫୁଟାଇ ଦିଅ ସଫେଦ ପଦ୍ମର କଢ଼ ।

ଚୁପ୍ ହୁଅ, ଥିର ହୁଅ,
ଏବଂ ନିର୍ବାକ୍ ହୁଅ, ହେ ସଂଜ
ଆଜି ତଳେ ହେଲେ
ଉତ୍ତର ନାହିଁ ସୃଷ୍ଟି ହେବାର ଦୁଃଖ,
ବା ଆତ୍ମଗୋପନର ଅଂଧାର !!

ବିଦାରି ଦିଅ, ଚିରି ଦିଅ, ତ୍ରି ଦିଅ,
ଛିନ୍‌ଭିନ୍ କରି ଦିଅ : ସମସ୍ତ ?
ଅପ୍ରସ୍ତୁତ ସ୍ଥାପତ୍ୟର ହାଡ଼କୁ,
ଏବଂ ବାଟବଣା ହୃଦର ଠିକଣାକୁ :
ସେ ଫୁଟାଇବ ନାଲି ପଦ୍ମର କଢ଼ ।

(୨୬ଶ ବର୍ଷ ୩ୟ ସଂଖ୍ୟା 'ଝଙ୍କାର' ରେ ପ୍ରକାଶିତ)

# ଶାଳଗ୍ରାମ

ଏମିତି ନିଷ୍ଠୁର ଅଂଧ ମଣିଷଟେ
ଧନଞ୍ଜତ ପିଇ ପିଇ ଖରା ବର୍ଷା
ବାଟଚଲା ସମସ୍ତର ଅଦଉତ୍ତ
କେଉଁ ଲଲ ସମୁଦ୍ରର ବାଲିର ଶେଯରେ !
ଭସା ଭସା ମେଘର ଅଂଚଳ ଛୁଇ
ଚୁମିଯାଏ କଳା ମଚମଚ ଦେହ,
ଉଜାପଡ଼େ ସୂର୍ଯ୍ୟ ତା'ର ଧୈର୍ଯ୍ୟର ପିଠିରେ ।

ସମସ୍ତର ହାତଗୋଡ଼, ପାଣିର ସିଆର
ଆସ୍ତେ ଆସ୍ତେ ସାଉଁଳାଏ
ଶୋଚନାର ମଖମଲୀ ସୁନାର ପାହାଚ,
କୂଳଖିଆ ଢେଉଙ୍କର ନଉଛାଳ
ଦେହେ ଦେହେ ଖଂଜ ହଏ
ହକ ହକ ଚାଗ ଏବଂ ମାପରୁଖା ମମତାର
ନାଳ ନେଳ କାଚ !

କିଏ ଅଛ ନର୍ମାପ୍ଲା ମଣିଷ ?
ଆସ ଆସ । ତା' ଦେହର ନଗିଡ଼ା ରକ୍ତକୁ
ଆଂଜୁଳରେ ତୋଳ ନଅ । ନାଳ ଗାମୁଛରେ
ଢାଂକଦିଅ ଶ୍ୱାସରୁଦ୍ଧ ଆବେଗର ମୁହଁ ।
ଓ ତା'ର ଚଉପାଶେ ବୁଣି ଦିଅ
ଧୂପ, ଦୀପ, ଫୁଲ ଏବଂ ଅକ୍ଷତ ଗୁଜଳ !

କିଏ ଅଛ ? ହେ ଶବର,
ତୋଳନିଅ ତା' ସ୍ନାୟୁର ନିରୁକ୍ତ ଉତ୍ତାପ ଏବଂ
ମନ୍ତ୍ର ପଢ଼ ତା' ପଦ୍ୟର
ଜମିଥିବା ଧୂଳିର ପୃଷ୍ଠାରେ :
ଭସା ଭସା ମେଘର ଅଂଚଳ ଆଖି
ଉଜା ପଡ଼େ ସୂର୍ଯ୍ୟ ପରି
ତା' ଧୈର୍ଯ୍ୟର ହାଡ଼ୁଆ ପିଠିରେ ।

(୨୫ଶ ବର୍ଷ ୯ମ ସଂଖ୍ୟା 'ଝଂକାର'ରେ ପ୍ରକାଶିତ)

# ଭଂଗାଗଢ଼ା

ଭାଂଗି ଦେଲେ ଛାରଖାର
ଭବ୍ୟ ଚସପଠ !
ଗଢ଼ି ଦେଲେ କି ସୁଂଦର
ସଂସାରର ଅଂକ !!

ମୁହୂର୍ତ୍ତେ ବିଳମ୍ବ ନାହିଁ ।
କୋଳାହଳ, ହଟ୍ଟଗୋଳ, କାନ୍ଦଣାର ଧ୍ୱନି
ମୋ ଚିଂତାର ଚାରି ପଟେ
ବାଜିଲା ମରଣ ଘଡ଼ି,
ସ୍ୱପ୍ନ ଏବଂ ଭସ୍ମର ସାନାଇ !

ଭାଂଗି ଦେଲେ ଜନପଦ,
ଗଢ଼ିଲେ ଉଜ୍ଜ୍ୱଳେ ଷୀଶବଣ ।
କି ସୁଂଦର ଭଂଗାଗଢ଼ା, ଗଢ଼ାଭଂଗା
ହସକାଂଦ ପୃଥ୍ୱୀର ଖେଳଣା !

ଭିତରେ ଜଳଇ ଦୀପ,
ଥପ୍ ଥପ୍ ଗଳେ ଅଂଧକାର,
ନିଃଶବ୍ଦ ସମସ୍ତ ହାତେ
ମୋ ଶ୍ୱାସର ହାଡ ଚୋଟେ
ଧ୍ୱନିର ଓଁକାର ।

( 'ଝଙ୍କାର' ରେ ପ୍ରକାଶିତ )

# ମୁହୂର୍ତ୍ତ

ମୋର ସବୁ ଦାଂଭିକତା
ଏଇଲାଗେ ମିଶିଥାଏ
ସଗରର ସ୍ତବ୍ଧ ମୁହୂର୍ତ୍ତରେ !
ମୋର ସବୁ ଆତୁରତା
ଝାଳ ହୋଇ ମିଶିଥାଏ
ପବନରେ, ଦୀର୍ଘ ନିଃଶ୍ୱାସରେ ।

ନିଷ୍ଠୁର ପବନ ଆସି
କୁତୁକୁତୁ କରିଦିଏ ମୋତେ
ହସାଏ ମୋ ସ୍ଖଳିତ ପଦକୁ ।
ବର୍ତ୍ତମାନ ବଂଚିବାର
ଶ୍ରେଷ୍ଠ ମୁହୂର୍ତ୍ତଟି
ଯୋଡ଼ିଦିଏ ବନ୍ଧୁ ପର
ଓଠ ସହ ଆପଣାର
ସମ୍ଭବ୍ୟ ଇଚ୍ଛାକୁ ॥

( 'ଝଂକାର' ରେ ପ୍ରକାଶିତ )

# ନିରୁତ୍ତର

ବାରଂବାର ଡାକଘରୁ ଫେରୁବା ପରେ ବି
ମନେ ହୁଏ : ସମସ୍ତ ନିଷ୍ଠୁର ।
ସମସ୍ତଙ୍କ ମୋ ଉଦ୍‌ବିଗ୍ନ
ଇଚ୍ଛାର କାଂଧରେ ହେଉଛି ସବାର ।

ମନେ ହୁଏ, ମୁଁ ଏକାଂତ
ଖୋଳ ଅଣ୍ଡା, ଡେଣାକଟା ପକ୍ଷୀ ।
ମୁଁ ଏକାଂତ ଆତ୍ମରତା,
ଆପଣାକୁ ସ୍ନେହର ଡେକ୍‌ଚିରେ
ନେଉଛି ଆଞ୍ଚି ।
ବାରଂବାର ଡାକଘରୁ ଫେରିବା ପରେ ବି
ମନେହୁଏ : ସଂପର୍କଙ୍କ ଖୋଲା ଚିଠି !
ଦିଆନିଆ ବକ୍ତବ୍ୟର
ମାମୁଲି ଖବର ।
ସମସ୍ତଙ୍କୁ ଚଡ଼ା ଚଡ଼ା
ପ୍ରତ୍ତୁର ଅନ୍ୟ କେଉଁ
ଦରଖାର ନିଷିଦ୍ଧ ନଥିଲ ॥

( 'ଝଂକାର' ରେ ପ୍ରକାଶିତ )